# ଜଗମୋହନ ଛାନ୍ଦ

ଦୀନକୃଷ୍ଣ ଦାସ

---

ପ୍ରକାଶକ
ପ୍ରାଚୀ ସମିତି, କଟକ

ମୂଲ୍ୟ ଆଠଅଣା ମାତ୍ର

# ମୁଖବନ୍ଧ

ପ୍ରାଚୀ ସମିତିର ବ୍ୟବହର୍ତ୍ତା ଶ୍ରୀମାନ୍ ବନ୍ଦନଚରଣ ପ୍ରାୟ ୪ ବର୍ଷ ତଳେ ଦୀନକୃଷ୍ଣ ଦାସଙ୍କର ଜଗମୋହନ ଛନ୍ଦର ଖଣ୍ଡେ ପୋଥି ଖୋର୍ଦ୍ଧା ଅଞ୍ଚଳରୁ ପ୍ରାପ୍ତ ହୋଇ ମୋ ନିକଟ ପଠାଇ ଦେଇଥିଲେ । ଏ ପୋଥିଟି ଜୀର୍ଣ୍ଣ ଶୀର୍ଣ୍ଣ ଏବଂ ଗୋଟିଏ ଖେଦାରୁ ଅଧେ ନାହିଁ । ସେ ଯାହା ହେଉ ଏହା ପାଇଁ ମୁଁ ଯଥପରୋନାସ୍ତି ଆନନ୍ଦିତ ହେଲି କାରଣ ରସକଲ୍ଲୋଳର ମୁଖବନ୍ଧ ଲେଖିବା ସମୟରେ ଏହି ଗ୍ରନ୍ଥର ଆବଶ୍ୟକତା ହୋଇଥିଲା । ରସବିନୋଦର ରଚୟିତା ଦୀନକୃଷ୍ଣଙ୍କୁ ରସକଲ୍ଲୋଳର ରଚୟିତା ଦୀନକୃଷ୍ଣଠାରୁ ପୃଥକ୍ ରୂପେ ନିର୍ଦ୍ଦେଶ କରିଥିବା ସମାଲୋଚକଙ୍କ ମତ ପ୍ରାମାଦିକ ମଣି ମୁଁ ବହୁ ଶ୍ରମସ୍ୱୀକାର ପୂର୍ବକ ଦୀନକୃଷ୍ଣଙ୍କ ପ୍ରକାଶିତ ଗ୍ରନ୍ଥମାନ ଭିନ୍ନ ଭିନ୍ନ ପାଠ କରି ଅଭ୍ୟନ୍ତର ତଥା ଆନୁଷଙ୍ଗିକ ପ୍ରମାଣ ବଳରେ ଉଭୟ ଗ୍ରନ୍ଥର ରଚୟିତାଙ୍କୁ ଏକ ବ୍ୟକ୍ତି ରୂପେ ରସକଲ୍ଲୋଳର ମୁଖବନ୍ଧରେ ଦର୍ଶାଇଅଛି । ଯେ ସମୟରେ ଜଗମୋହନ ଛନ୍ଦ ପୋଥିଟି ହସ୍ତଗତ ହୋଇଥିଲା ମୋତେ ଏତେ ଶ୍ରମ ବା ସମୟ ବ୍ୟୟ କରିବାକୁ ହୋଇ ନ ଥାନ୍ତା । ଦୀନକୃଷ୍ଣ ରସବିନୋଦର ଦୁଇ ସ୍ଥାନରେ ନିଜର ଆତ୍ମ ପରିଚୟ ଦେଇ ଅଛନ୍ତି । ସେଥିରୁ ଜଣାଯାଏ, ଯେ ସୁବର୍ଣ୍ଣରେଖା ନଦୀତୀରସ୍ଥ ଜଳେଶ୍ୱର ନଗର ସୀମାର ନିକଟବର୍ତ୍ତୀ ଆଠଦଣ୍ଡ ପାଟ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ । ଯେ ଅଠଦଣ୍ଡପାଟ ତଣଆ ରାଜ୍ୟର ନିକଟବର୍ତ୍ତୀ । ତାଙ୍କ ପିତାଙ୍କର ନାମ ମଧୁସୂଦନ ତାଙ୍କ; ବଂଶ ଓ ଜାତିରେ କେହି ଜଣେ କବିତ୍ୱ ଲାଭ କରି ନ ଥିଲେ । ଦୀନକୃଷ୍ଣଙ୍କ ଦୀକ୍ଷା ଓ ଶିକ୍ଷା ବିଷୟରେ କୌଣସି ସ୍ପଷ୍ଟ ପ୍ରମାଣ ନ ଥିଲେହେଁ ରସବିନୋଦର ପ୍ରଥମ

ଅଧ୍ୟାୟରେ ସେ ସେ ଇଙ୍ଗିତ ପ୍ରଦାନ କରିଅଛନ୍ତି ସେଥିରୁ ଜଣାଯାଏ ଯେ ତାଙ୍କର ଘର କୁଟୁମ୍ବମାନେ ବାଣିଜ୍ୟ, କୃଷି ଆଦି କାର୍ଯ୍ୟରେ ନିରତ ଥିଲେ କିନ୍ତୁ ସମ୍ଭବତଃ ତାଙ୍କର ବାଲ୍ୟଶିକ୍ଷା ହେତୁ ଓ ପୂର୍ବଜନ୍ମର ବାସନା ହେତୁ ସେ ବାଣିଜ୍ୟ କୃଷି ଆଦି କାର୍ଯ୍ୟମାନଙ୍କରେ ମନ ନ ବଳାଇ ପାପତାପକ୍ଲିଷ୍ଟ ଲୋକଙ୍କ ଉଦ୍ଧାର ନିମିତ୍ତ ସର୍ବଦା ଚିନ୍ତିତ ଥିଲେ ।

ବାଣିଜ୍ୟ କୃଷି କାର୍ତ୍ତିମାନ । ଦୁଃଖର ଅନେକ ବିଧାନ ॥
କିଛିହିଁ ନ ଜାଣିଲି କରି । ହୋଇଲି କୁପୁରୁଷ ପରି ॥
ଏମନ୍ତ ବୋଲି ପ୍ରତିଦିନେ । ବସିଣ ଭାବୁଥାଇ ମନେ ॥
ସଂସାର ଜନ ଉଦ୍ଧାରଣ । କିଛିହିଁ ନୋହିଲା କାରଣ ॥ ଇତ୍ୟାଦି

ଜଗତର ମଙ୍ଗଳ ନିମିତ୍ତ ହୃଦୟରେ ଭଗବତ୍ ପ୍ରେରଣାଜନିତ ସ୍ପନ୍ଦନର ପ୍ରତିବିମ୍ବ ସ୍ଥାନେ ସ୍ଥାନେ ତାଙ୍କ କବିତ୍ୱମାନଙ୍କରେ ପରିଦୃଷ୍ଟ ହୁଏ ।

ଏବେ ମୁଁ କହୁଅଛି ଯାହା । ସୁଜନେ ହେତୁ କର ତାହା ॥
ଧର୍ମ କଥାକୁ ମନ ଦେଇ । ପାପକୁ ନ ବଗ୍ୱର କେହି ॥
ଜୀବନ ଥିବା ପର୍ଯ୍ୟନ୍ତେ । ପାପକୁ ଦଣ୍ଡ କର ଚିତ୍ତେ ॥
ଏ ଦେହ ନ ଥିବ ସର୍ବଥା । କେତେ ଦିନକୁ କେତେ କଥା
ପୃଥିବୀରେ ଯେତେ ରାଜା ଥିଲେ । ସେମାନେ କେ କି ଘେନିଗଲେ
ପାପ ପୁଣ୍ୟର ସୀମା ଦେଖି । ଅଭୁତ ନ ରହିଲେ କେହି ॥
ଏ କଥା ଜାଣି କୃଷ୍ଣ ଦାସ । ପାପପଦ୍ମକୁ କଲା ଆଶ ॥

ରସବିନୋଦ ।

ଦୀନକୃଷ୍ଣଙ୍କ ଅପ୍ରକାଶିତ ଗ୍ରନ୍ଥ ଅମୃତ ସାଗରରେ :—

ଶବଣ ଭୂଷଣ ବାନା ଜଗତେ । ଭକ୍ତ ଚୈତନ୍ୟ ଜଗତ ହେତେ
ପାଉଲେ ସ୍ୱଜନ ଶରଣ ପଣ । ଅଶେଷ ଜନ୍ମର କଲୁଷ ନାଶ
ନୋହଲେ ଆଉ ଭଲ ଗତି ନାହିଁ । ଏ ଭବ ସାଗରୁ ତାରବ କେହି
ଦୀନକୃଷ୍ଣ ଦାସ କହୁଛି ଯାହା । ବୁଝିବି ଜନେ ହେଉ କର ତାହା
ପାଦପଦ୍ମରୁ ଆନ ଗତି ନାହିଁ । ତେଣୁ କହୁଅଛି କାର୍ପଣ୍ୟ ହୋଇ

ଜଗମୋହନ ଛାନ୍ଦ ଓ ରସ କଲ୍ଲୋଳରେ ଏହି ସ୍ୱଭବର ଭକ୍ତିମାନ ଅଛି । ଭକ୍ତ ଭାବରେ ଦେଖିବାକୁ ଗଲେ ତାଙ୍କ ଆସନ ଅତି ଉଚ୍ଚ । ତାଙ୍କର ଭକ୍ତି ଜ୍ଞାନମିଶ୍ରା । ଭଗବତ୍‌ତତ୍ତ୍ୱଜ୍ଞାନରେ ଯେ ନିଷ୍ଠଲା ଭକ୍ତି— ଶ୍ରୀକୃଷ୍ଣରସ ମାଧୁର୍ଯ୍ୟ ପାନରେ ଯେ ଐକାନ୍ତିକ ନିଷ୍ଠା ଦୀନକୃଷ୍ଣଙ୍କଠାରେ ପରିଦୃଷ୍ଟ ହୁଏ ତାହା ତାଙ୍କୁ ପରମ ବୈଷ୍ଣବର ଆସନରେ ଆସୀନ କରାଇ ଅଛି । ମହାପୁରୁଷ ଶ୍ରୀ ଜଗନ୍ନାଥ ଦାସଙ୍କ ପ୍ରବର୍ତ୍ତିତ ଅତି ବଡ଼ ସମ୍ପ୍ରଦାୟର ସେ ଅନ୍ତର୍ଭୁକ୍ତ ଥିଲେ । ଏହା ରସକଲ୍ଲୋଳ ଓ ମଥୁରାମଙ୍ଗଳର ମୁଖବନ୍ଧରେ ସୂଚିତ ହୋଇଅଛି ।

ଦୀନକୃଷ୍ଣଦାସ ରସବିନୋଦ ଗ୍ରନ୍ଥର ଅବତରଣିକାରେ ରସବିନୋଦ ରଚନାକାଳ ଅବଧି ଯେ ଗ୍ରନ୍ଥ ମାନ ରଚନା କରିଥିଲେ ତାହାର ତାଲିକା ଦେଇ ଅଛନ୍ତି । ଗୁଣସାଗର, ରସସମୁଦ୍ର, ସଂସାରବୋଧନ, ଅମୃତସାଗର, ମୁକ୍ତିସାଗର, କଳିଯୁଗଶାସ୍ତ୍ର, ପ୍ରସ୍ତାବସାଗର, ଜଗମୋହନ ଛାନ୍ଦ, ଜାମ୍ବବତୀବିଭା, ବୃନ୍ଦାବନରାସ, କଂସବଧ, ଜ୍ଞାନସାଗର, ଧର୍ମସାଗର, ଶିଶୁପାଳଦନ୍ତବକ୍ରଶାଲ୍ୱବଧ, ନାମରତ୍ନଗୀତା, ରସବିନୋଦ, ନାରକାସୁର ବଧ, ରୁକ୍ମିଣୀବଧ, ବାଣାସୁର ଯୁଦ୍ଧ, ଜ୍ଞାନଚୂଡ଼ାମଣି, ସ୍ତ୍ରୀପୁରୁଷ ଲକ୍ଷଣ, ଭକ୍ତିସାଗର, ମହିମାସାଗର ଓ ଚଉତିଶାମାନ । ଏହି ତାଲିକାରୁ ବୁଝିବା ଉଚିତ ନୁହେଁ ଯେ ରସବିନୋଦ ପରେ ଦୀନକୃଷ୍ଣ ନାରକାସୁରବଧ

ପ୍ରଭୃତି ଚଉତିଶାମାନ ଲେଖିଥିଲେ । ରସବିନୋଦ ଲେଖାବେଳକୁ ଏ ସବୁ ଲେଖା ହୋଇ ସରିଥିଲା । ରସବିନୋଦ ଗ୍ରନ୍ଥରେ ସେମାନଙ୍କର ନାମୋଲ୍ଲେଖ ତାହାର ପ୍ରକୃଷ୍ଟ ପ୍ରମାଣ । ଯେଉଁ ସମାଲୋଚକମାନେ ରସ-କଲ୍ଲୋଳକାରଙ୍କ ଭାଷା ତଥା ରଚନା ପଦ୍ଧତି ରସବିନୋଦକାରଙ୍କ କୃତିମାନଙ୍କରେ ପରିଦୃଷ୍ଟ ହୁଏ ନାହିଁ ବୋଲି ସେମାନଙ୍କୁ ପୃଥକ୍ ରୂପେ ଗ୍ରହଣ କରିଅଛନ୍ତି, ସେମାନେ ଭାଷାର ସହଜଶକ୍ତିଜନିତ ସମତା ପରିଦର୍ଶନ କରିବାରେ ଅସମର୍ଥ ହୋଇଅଛନ୍ତି । ବ୍ୟକ୍ତି ବିଶେଷଙ୍କର ଭାଷାଗତ ବୈଶିଷ୍ଟ୍ୟ ଭାଷାତତ୍ତ୍ୱର ବିଶେଷଜ୍ଞଙ୍କ ଦୃଷ୍ଟିରେ ପ୍ରତିଭାତ ହୁଏ । ରସକଲ୍ଲୋଳର ମୁଖବନ୍ଧରେ ପ୍ରଦର୍ଶିତ ହୋଇଅଛି, ଯେ ପ୍ରସଙ୍ଗର ଅନୁରୋଧରେ ରଚନାର ଶୈଳୀ ପୃଥକ୍ ରୂପ ଧାରଣ କରେ କିନ୍ତୁ ଭାଷାର ସହଜଭାବ ତଥା ଝଙ୍କାର ସର୍ବତ୍ର ଏକରୂପରେ ବିଦ୍ୟମାନ ।

ବର୍ତ୍ତମାନ ରସକଲ୍ଲୋଳର ପଦମାନଙ୍କ ସହିତ ଜଗମୋହନ ଛନ୍ଦର କେତେକ ପଦମାନଙ୍କର ତୁଳନା କରାଯାଉ ।

(୧) କଳ୍ପ କଲେ ବିଷ୍ଣୁଙ୍କୁ ସୁଦ୍ଧପରାୟେ ।
ଗମନ କଲେ ତା ପରିକ୍ରମାକୁ ପାଏ ।
ଶୋଇଥିଲେ ଯହିଁ ଦଣ୍ଡପ୍ରଣାମ ସମ ।
ଅମିଷ ଆହାର ଅଦ ହବିଷ୍ୟ କର୍ମ ।

ଜଗ:—୧—୬।୨

କରୁଥିଲେ ଗତି ପରିକ୍ରମାମତ କଲିତ ସୁଦ୍ଧପରାୟେ
କରନ୍ତେ ଅମିଷ ଅଦ ଦ୍ରବ୍ୟ ଗ୍ରାସ ହବିଷ୍ୟ ବର୍ତ୍ତିକୁ ପାଏ ।
କଲେ ନିଦ୍ରା ଯହିଁ ଦଣ୍ଡପ୍ରଣାମହିଁ ଫଳ ହୁଅଇ ପ୍ରାପତ ।
କଲତ୍ରାଦି ସୁତ ଯେତେକର ଭୃତ୍ୟମାନେ ଜୀବନ ମୁକତ

ର:କ:୨୪–୨୪।୨୫

(୨) ଖଳ ବଳ ମୂର୍ଖ ଲୋକଙ୍କୁ ଏ ସୁଖଦାୟକ ନୁହଇ ହେବେହେଁ
ଚନ୍ଦ୍ର ଉଦେ ହେଲେ ଅକର୍ମଶିଳା ଯେ ଲେଶେହେଁ ଦ୍ରବୀଭୂତ ନୁହେ
ବୋଧ ନୁହନ୍ତି
ଯେ ହେବ ତାହାଙ୍କୁ କହିଲେ
ମାଣ୍ଡମାର୍ଜାର ସର୍ପ ଫେଣ ନ ଧରେ ଯେତେ ପଦ୍ମତୋଳା ଗାଇଲେ ।
ଜଗ:୪—୨୧

କଳାଙ୍କର ଉଦେ ହେଲେ ଚନ୍ଦ୍ରମଣି ଦ୍ରବେ
କେତେ ବେଳେ ଅକର୍ମଶିଳାରୁ ନୀର ସ୍ରବେ
କୋମଳ କଣ୍ଠ ଗାଇଲେ ପଦ୍ମତୋଳା ଗୀତ
କରେ ମାଣ୍ଡମାର୍ଜାର ଫଣୀ ଫଣା ଉନ୍ନତ ।
ର:କ:୭—୩୨

(୩) କିଂଶୁକ କୁସୁମ ପାଟ କରବାଳ ରଙ୍ଗ କୋଷରେ ଛୁଅଇଁ
ଅଛନ୍ତି ବିଶ୍ୱାସ କରି ଦ୍ୱିଜବର ଗୋଚରେ ଥାଇ ତା ଦେଇ
ହେ ଜନେ
ଜଗ:୬—୨

କିଂଶୁକ ପାଟ କରବାଳ ତାହାର
କରିବାରୁ ରଙ୍ଗ କୋଷେ ତାହା ସଙ୍ଗ ସୁଖ ନୋହୁ ଅଛି କାହାର
ରକ:୧୨—୩

(୪) କୁଟୁମ୍ବୀ ଘନଜନ ମନ ପର୍ଯ୍ୟେ ଦ୍ରବସ ହୋଏ ସନ୍ତପନ୍ତ
ଜଗ-୭-୨

କୁଟୁମ୍ବୀ ଘନଜନ ମନ ପର୍ଯ୍ୟେ ସନ୍ତାପି ହେଲେ ଏକା ଦନେ
ର:କ-୧୫-୩ ।

( ୫ ) କୃପଣଙ୍କୁ ଲେଖି ସୃଜ କଲ ପ୍ରାଏ ଶ୍ରମହିଁ ସିନା ରହିବ
ଜଗ ୬-୨୯ ।

କୃପଣଙ୍କୁ ଲେଖି ପ୍ରାପ୍ୟେ ତାଙ୍କୁ ଲଭ ଆଶା ଅକଲେ ମୁରୁଛି
ପୋଡ଼ ର:କ:—୩୬-୨୮ ।

( ୬ ) ବନେ ବନାନଳ ଜଳନ୍ତ ପ୍ରବଳ ଫୁଟନ୍ତ ତୃଣଧ୍ୱଜମାନେ
ଜଗ : —

ବନେ ବନ ଅଗ୍ନି ଦ୍ୱସିଲେ ସ୍ୱଜନେ, କାହିଁ ତୃଣଗ୍ରଜେ
ଫୁଟନ୍ତ ର : କ; ୧୫-୩ ।

( ୭ ) ଫେନ ଉଦଗାର ଗନ୍ଧର୍ବ ବଳର ଲେଟନ୍ତ ପଡ଼ି ପାଦଧଙ୍କେ ।
ଜଗ :-

ଢର୍ଦ୍ଦମରେ ପଡ଼ି ଫେନମୁଖେ ରଡ଼ି ଛଡ଼ନ୍ତ ଗନ୍ଧର୍ବ ବଇଶ ।
ର : କ : — ୧୫-୫ ।

ପୁନଶ୍ଚ :—ମୟୂର ପୁଚ୍ଛ ଛଇ ତଳେ
ଚୟୂନ୍ଦୁ ପକାଇ ଭୁଜଙ୍ଗମ ଯାଇ ଶୟନ କରଇ ଥିକଲେ
ଜଗ : —

କୁଣ୍ଡଲୀକୁଳ ଏହିରୂପେ କଳାପିକଳାପ ତଳରେ ରହିଲେ
ପାଇ ବପଉଛି ଅତପେ : — ର କ : ୧୫-୬ ।

( ୮ ) ଜଗମୋହନର ୭ମ ଛାନ୍ଦର ୬୭ ପଦ 'ସହିତ ରସ-
କଲ୍ଲୋଳର ୩୪ଶ ଛାନ୍ଦର ୩୭ । ୩୬ ପଦ; ଜଗମୋହନର
୧୦ମ ଛାନ୍ଦ ସହିତ ରସକଲ୍ଲୋଳର ୧୬ମ ଛାନ୍ଦ ଓ
ଜଗମୋହନର ୧୪ଶ ଛାନ୍ଦ ସହିତ ରସକଲ୍ଲୋଳର ୧୪ଶ ଛାନ୍ଦ
ତୁଳନା କଲେ ଏକ ଭାବରଲେଖା ପରିଦୃଷ୍ଟହୁଏ ।

( ୯ ) କେତେଗୁଡ଼ିଏ ପଦର ବ୍ୟବହାରରେ ଧୀନକୃଷ୍ଣଙ୍କର ଯେ ବିଶେଷତ୍ୱ ଲକ୍ଷିତ ହୁଏ ତାହା ଉକ୍ତ ଗ୍ରନ୍ଥରେ ପରିଦୃଷ୍ଟ ହୁଏ କଳାପୀ କଳାପ, ବାରଣ ବାରଣ, ଅନ୍ତକ ସଘାତ, କଥା-ପ୍ରସଙ୍ଗ, ବଙ୍କବାଣୀ, କନ୍ଦର୍ପ, ପୁଷ୍ପବଲ୍ଲୀ, ଅନୁପାମ, ଛାୟା, ପ୍ରବନ୍ଧ, ବିଠଙ୍କ, ଇତ୍ୟାଦି ।

( ୧୦ ) ଧୀନକୃଷ୍ଣଙ୍କ ଚଉତିଶାମାନଙ୍କ ସହ ଜଗମୋହନ ଓ ରସ-କଲ୍ଲୋଳର ଅନେକାଂଶରେ ସମତା ପରିଦୃଷ୍ଟହୁଏ । ବାହୁଲ୍ୟ ଭୟରୁ ଉଦାହରଣ ପ୍ରଦତ୍ତ ହେଲା ନାହିଁ ।

( ୧୧ ) ରସକଲ୍ଲୋଳର ମୁଖବନ୍ଧରେ ପ୍ରସ୍ତାବସାଗର ବା ପ୍ରସ୍ତାବସିନ୍ଧୁ ଓ ଧର୍ମସାଗର ସହିତ ରସକଲ୍ଲୋଳର ପଦମାନଙ୍କରେ ସମତା ପ୍ରଦର୍ଶିତ ହୋଇଅଛି ।

( ୧୨ ) ବର୍ତ୍ତମାନ ଅମୃତ ସାଗର ବୋଲି ( ଗୀତଗୋବିନ୍ଦର ଅର୍ଥ ) ଯାହା ରସବିନୋଦର ଅବତରଣିକାରେ ନିର୍ଦ୍ଦେଶିତ ହୋଇଅଛି ତାହାର ୧ମ ଛାନ୍ଦରୁ କେତେକ ପଦ ନିମ୍ନରେ ଉଦ୍ଧୃତ ହେଲା । ତହିଁରେ ରସକଲ୍ଲୋଳକାରଙ୍କ ଭାଷା ଓ ରଚନା ଶୈଳୀର ପୂର୍ଣ୍ଣ ପରିଚୟ ପ୍ରଦାନ କରେ ।

ଭୁବଙ୍ଗୀ ଭଙ୍ଗିମା କେ ପାରେ ଜାଣି ।
କି ଶୋଭା ଦିଶଇ ଲାବଣ୍ୟ ଠାଣି ।
ଲୋଚନେ ଅଛି କି ମଦନ ବାଣ ।
ତହିଁ କି ସୁନ୍ଦର ଅଞ୍ଜନ ଗୁଣ ।
କର୍ଣ୍ଣରେ ମାଣିକ୍ୟ କୁଣ୍ଡଳ ଶୋହେ ।
ଦେଖିଲା ଜନର ମନକୁ ମୋହେ ।

ଭଙ୍ଗିମା କୁଞ୍ଜରେ ରଙ୍ଗିମା ଫୁଲ ।
ନାୟିକା ପୁଞ୍ଜାଙ୍କୁ କି ଦେବା ଭୁଲ ।
କଣ୍ଠେ ଶୋଭିତ କଉସ୍ତୁଭ ମଣି ।
କୋଟି କୋଟି ଚନ୍ଦ୍ରମାନଙ୍କ ଜିଣି ।
ବରକୋଳଅ ମୁକୁଟାରୁ ମାଳେ ।
ଚଳ ଚଳ ପଦ୍ମ ହୃଦରେ ଲୁଚଳେ ।

ଏହି ଗ୍ରନ୍ଥ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ହେବ । ନାମ୍ବଳୀ ଵିଭୀ ବୃନ୍ଦାବନ ରସ, ମୁକ୍ତିସାଗର, ରୁକ୍ମଣବଧ, ବାଣାସୁର ଯୁଦ୍ଧ ପ୍ରଭୃତି ଗ୍ରନ୍ଥମାନ ଏପର୍ଯ୍ୟନ୍ତ ପ୍ରାଚୀ ସମିତିର ହସ୍ତଗତ ହୋଇ ନାହିଁ । ସେ ଯାହା ହେଉ ଜଗମୋହନଛାନ୍ଦ ଓ ଅମୃତ ସାଗର ଏହି ଦୁଇ ଗ୍ରନ୍ଥଦ୍ୱାରା ସ୍ପଷ୍ଟ ପ୍ରତିପାଦିତ ହେଲା ଯେ ରସକଲ୍ଲୋଳର ରଚୟିତା ଓ ରସ-ବିନୋଦର ରଚୟିତା ଏକ ବ୍ୟକ୍ତି ଅଟନ୍ତି ।

କୌଣସି କୌଣସି ସମାଲୋଚକ କହନ୍ତି ଯେ ରସବିନୋଦକାର ଦୀନକୃଷ୍ଣ ନୀଚ ଧରଣର କବି, କାରଣ ରସବିନୋଦରେ ସେ ଲେଖି-ଅଛନ୍ତି '' ଅକ୍ଷର ଗଣିମ ହସ୍ତରେ । ତେବେ ସେ ଲେଖିବ ପଡରେ । ଏ ସ୍ଥଳରେ ଅନ୍ୟ କେତେ ପଦ ଉଦ୍ଧାର ନ କଲେ କବିଙ୍କ ଭାବ ସ୍ପଷ୍ଟ ଭାବରେ ପ୍ରତିପନ୍ନ ହେବ ନାହିଁ ।

ଏ ଗ୍ରନ୍ଥ ଚରଣକୁ ଚଉ । ନବ ଅକ୍ଷର ପରଚ୍ଛନ୍ନ ।
ଅଷ୍ଟ ଅକ୍ଷର ହୋଇ ନାହିଁ । ଦଶ ହୋଇବ ଅବା କାହିଁ ।
ଲେଖିବା ପଢିବାର ଲୋକ । ସେ ଯେବେ ହୋଇବ ବିବେକ ।
ଅନୁଭବରେ ଦେବ ମନ । ବିଚାର କରିବା ଲେଖନ ।
ଅକ୍ଷର ଗଣିମ ହସ୍ତରେ । ତେବେ ସେ ଲେଖିବ ପଡରେ ।

ମନ ନୟନ ଏକ କରି । ଲେଖନ ମୁନେ ଦୃଷ୍ଟି ଭରି ।
ଚୈତନ୍ୟ ନ ଟଳିବ ଯେବେ । ଅକ୍ଷର ନିର୍ଗ ହୋଇ ତେବେ ।

× × × × ×

ଏମନ୍ତ ଭାବେ ଯେବେ ଲେଖି । ଏଥିକୁ ଜଗନ୍ନାଥ ସାକ୍ଷୀ ।
ଶ୍ଳୋକ ଷବଦ ଗୋଳ ଗାରେ । ଚିତ୍ତ ନ ଦେବ ଅନ୍ୟ ଥରେ ।

ଦୀନକୃଷ୍ଣଙ୍କ ପୂର୍ବର ଅଧିକାଂଶ କବିମାନଙ୍କ କୃତିର ଅସମ ଅକ୍ଷର ବିନ୍ୟାସ ତଥା ଦାଣ୍ଡିବୃତ ଦର୍ଶନରେ ଦୀନକୃଷ୍ଣ ଭବିଷ୍ୟତ ଲେଖକଙ୍କୁ ଏହା ପରିହାର କରିବା ନିମନ୍ତେ ସାବଧାନ କରାଇ ଅଛନ୍ତି । କିନ୍ତୁ ଯେଉଁମାନେ ତାଙ୍କର ଉକ୍ତ ଉକ୍ତି ଦର୍ଶନରେ ତାଙ୍କୁ କସରତିଆ କବି (Laboured poet) ବୋଲି କହନ୍ତି ସେମାନେ କବିତ୍ୱର କାରଣ କଣ ତାହା ଜାଣନ୍ତି ନାହିଁ । ଆଳଙ୍କାରିକମାନଙ୍କ ମତରେ ପ୍ରତିଭା, ବହୁଶାସ୍ତ୍ର ଦର୍ଶିତା ଓ ଅଭ୍ୟାସ ଏହି ତିନି ଗୋଟି ମିଳିତ ହୋଇ ସମଷ୍ଟିଭାବରେ କବିତ୍ୱର ଏକ କାରଣ ରୂପେ ଗୃହୀତ । କେତେକଙ୍କ ମତରେ ପ୍ରତିଭା ହିଁ କବିତ୍ୱର କେବଳ କାରଣ ଅଟେ । ତାହା ସତ୍ୟ, ବାଳକଙ୍କ ଦ୍ୱାରା କବିତା ରଚନା ତାହାର ନିଦର୍ଶନ କିନ୍ତୁ ସେହି ତିନିଗୋଟିକୁ କାରଣ ରୂପେ ଗ୍ରହଣ କରିବାର ଅଭିପ୍ରାୟ ଏହି ଯେ ତଦ୍ୱାରା ଉତ୍ତମ ଶ୍ରେଣୀର କବିତା ରଚିତ ହୁଏ ।

ପ୍ରତିଭାରୁ କବିତ୍ୱ ଜାତ ହୁଏ । ଅଭ୍ୟାସ ଯୋଗରେ କବିତ୍ୱ ପରି ବର୍ଦ୍ଧିତ ହୁଏ । କବିତ୍ୱର ଗୁରୁତା ନିଷ୍ପାଦନରେ ବ୍ୟୁତ୍ପତ୍ତି ହିଁ ପ୍ରଧାନ ଅଟେ ଦଣ୍ଡୀଚାର୍ଯ୍ୟ କହନ୍ତି:—ପ୍ରତିଭା ଓ ପୂର୍ବବାସନାର ଅଭାବରେ ମଧ୍ୟ ଅଧ୍ୟୟନ ଓ ଶ୍ରମ ବା ଯତ୍ନରେ ସେବିତା ହେଲେ ବାଗ୍‌ଦେବୀ କାହାର କାହାରିକୁ ଅନୁଗ୍ରହ କରନ୍ତି ।

ନ ବଦ୍ୟରେ ଯଦ୍ୟପି ପୂର୍ବ ବାସନା ଗୁଣାନୁବନ୍ଧ ପ୍ରତିଭାନମଦ୍ଭୁତମ୍
ଶ୍ରୁତେନ ଯତ୍ନେନ ଚ ବାଗୁପାସିତା ଧ୍ରୁବ କରୋତ୍ୟେବ କମପ୍ୟନୁଗ୍ରହମ୍

ରସବିନୋଦକାର ଶ୍ରମସ୍ୱୀକାର କରି ଗ୍ରନ୍ଥ ଲେଖିଲେ ବୋଲି ସେ ନୀଚ ଧରଣର କବି ଏହା କହିବା ସମୀଚୀନ ନୁହେଁ । କାରଣ ରସକଲ୍ଲୋଳ କାର ରସକଲ୍ଲୋଳର ୧୬ଶ ଛାନ୍ଦ ୨୦ପଦରେ ଲେଖିଅଛନ୍ତି ।

କହୁଅଛୁ ସୁଜନମାନଙ୍କୁ ଏତେ ଯେ
କୃପା କରିବ ମୋତେ ପ୍ରସନ୍ନ ଚିତ୍ତେ ହେ ।
କିଅ ଅକ୍ଷରେ କଲୁ ଯେ ଗୀତ
କେବେହେଁ ଏଥି ନ ଦେବ ଘାତ
କବି ହେଲେ ତ ଜାଣିବ ଏଥି ଶ୍ରମହିଁ ଯେତେ ହେ ।

ରସକଲ୍ଲୋଳକାରଙ୍କ ଏ ଉକ୍ତିରୁ ଜଣା ପଡ଼ୁଛି ଯେ ସେ ବହୁ ଶ୍ରମ ସ୍ୱୀକାର କରି ରସକଲ୍ଲୋଳ ଲେଖିଥିଲେ ତାହାଙ୍କୁ କଏ ନୀଚ ଧରଣର କବି ? ପରଶେଷରେ ବକ୍ତବ୍ୟ ଏହି ଯେ ଅମ୍ଭମାନଙ୍କର ଅନୁଶୀଳନ ଓ ଆଲୋଚନାର ଅଭାବରୁ ନାନା ଅଯୌକ୍ତିକ କଥା ସାହିତ୍ୟରେ ସ୍ଥାନ ପାଉଅଛି ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି



# ସୂଚୀପତ୍ର

# ଜଗମୋହନ ଛାନ୍ଦ

## ପ୍ରଥମ ଛାନ୍ଦ

ରାଗ—ଗୁଜ୍ଜରୀ

( ସଙ୍ଗମଭଅଶ୍ୱ ବାଣୀରେ ଗାଇବ )

ଅନନ୍ତ-କନ୍ଦ-ଚରଣେ ହୋଇ ରଗତ ।
ଏକ ମନେ ଶୁଣ ଜଗମୋହନ ଗୀତ । ୧ ।

ଅଶେଷ କୋଟି ବ୍ରହ୍ମାଣ୍ଡ ମଧ୍ୟେ ଉତ୍ତମ ।
ଏକ କ୍ଷେତ୍ର ଅଛି ନାମ ପୁରୁଷୋତ୍ତମ । ୨ ।

ଭରତ ଖଣ୍ଡ ଶେଷରେ ଦକ୍ଷିଣ ପାଶେ ।
ପଞ୍ଚ କୋଶ ଶଙ୍ଖ ଅକୃତରେ ପ୍ରକାଶେ । ୩ ।

କେ କହିବ ବଚନେ ସେ କ୍ଷେତ୍ର ମହିମା ।
ଯମ ନ ଲଙ୍ଘଇ ଯହିଁ ମୁକତି ସୀମା । ୪ ।

ଅଗାଧ ଲୋକର ସେହି ପରମ ଗତି ।
ଅନେକ ବଚନ କଥା ଚନ୍ଦ୍ରରେ ଥାନ୍ତି । ୫ ।

କଲିକ କଲେ ବସ୍ତୁଙ୍କୁ ସୁଦ୍ଧ ପରାଏ ।
ଗମନ କଲେ ତା ପଦ୍ମକମାକୁ ପାଏ । ୬ ।

ଶୋଇଥିଲେ ଯହିଁ ଦଣ୍ଡପ୍ରଣାମ ସମ ।
ଅମିଷ ଆହାର ଅଟ ହବିଷ୍ୟ କର୍ମ । ୭ ।

ଥାବର ଜଙ୍ଗମ କୀଟ ପତଙ୍ଗମାନେ ।
ଦେହାବସାନେ ବସନ୍ତି ପରମ ସ୍ଥାନେ । ୮ ।

ବ୍ରହ୍ମ ପ୍ରଳୟରେ ଯେହୁ ନୁହଇ ନାଶ ।
ଅତୁଳନୀୟା ଥଳ ଭୂମି ସଦା ପ୍ରକାଶ । ୯ ।

ଗୃହପାଶେ ବେଢ଼ି ନଦୀ ସାଗର ରହେ ।
କମ୍ବୁ କଣ୍ଠକଙ୍କୁ ଝଳ ପର୍ଯ୍ୟନ୍ତେ ଶୋହେ । ୧୦ ।

ଚଇତ୍ରରଥ ନନ୍ଦନ ଗର୍ବଙ୍କୁ ଦଣ୍ଡି ।
ଉତ୍ତମ ଅର୍ଯମେ ହୋଇ ଅଛନ୍ତି ମଣ୍ଡି । ୧୧ ।

ବିଷ୍ଣୁ ଉପଯୋଗ ଫୁଲ ଫଳାଦ ତହିଁ ।
ବଚନରେ କେତେ ତାହା ବର୍ଣ୍ଣିବ କହି । ୧୨ ।

ଥାବର ଦେହକୁ ପାଇ ତାହାଙ୍କ ପରି ।
ନାହାନ୍ତି ଭକ୍ତିବନ୍ତ ସେ ଅତ୍ୟନ୍ତ ଧୀରୀ । ୧୩ ।

ବୈଷ୍ଣବ ପଣକୁ ତାଙ୍କ ପରିଏ ସେହି ।
ବୈଷ୍ଣବ ହେଲେହେଁ ଲୋକେ ଶୋଚନା ନାହିଁ । ୧୪ ।

ଶୀତ ଖରା ବରଷା ସେ ସବୁ ସହନ୍ତି ।
ଅହର୍ନିଶି ପ୍ରସାଦ ସୁମନ ବହନ୍ତି । ୧୫ ।

ଧନ୍ୟ ଧନ୍ୟ ଧନ୍ୟ ତାହାଙ୍କର ବାସନା ।
ସେହି ଯେନ ବିଷ୍ଣୁର ସେ ପୀରତି ବିନା । ୧୬ ।

ପଥିକ ପାଇବାରେ ସେ ଅତ୍ୟନ୍ତ ରତ ।
ଫୁଲ ଫଳ ପଦ୍ମାସନ କରନ୍ତି ଦତ୍ତ । ୧୭ ।

ଶବ୍ଦ ଭେଦି ଏକାକାର ଦ୍ୱିଜେ ବିଶ୍ୱାସ ।
ଫଳ ଭୋଜନେ ତାଙ୍କ କରନ୍ତି ଅଶ୍ୱାସ । ୧୮ ।

ସହସ୍ତ୍ର ପଣରୁ ଶସ୍ତ୍ରଘାତ ସନ୍ନତ ।
ଅବିରତ ହୋଇଥାନ୍ତି ମଉନ-ବ୍ରତ । ୯ ।

କହିଲେ ନକ୍ଷ ସରିବ ତାଙ୍କ ଚରିତ ।
ବର୍ତ୍ତିଲେ ବୃକ୍ଷେ ଅଛୁ ବୈଷ୍ଣବ ମତ । ୧୦ ।

ଏହୁ ଯେନ କ୍ଷେତ୍ରବରେ ଅଛନ୍ତି ରହି ।
ନେତ୍ରପଥେ ଦେଖି ଲୋକେ ହୁଅନ୍ତି ମୋହି । ୧୧ ।

ଆନ ବୃକ୍ଷମାନଙ୍କର ଏ ଗୁଣ ନାହିଁ ।
ମାରକ କଣ୍ଟକ ଆଦ ଅବଗୁଣହିଁ । ୧୨ ।

ଏଣୁ ତାହାଙ୍କର ନାହିଁ କ୍ଷେତ୍ରରେ ବାସ ।
ସାଧୁଙ୍କୁ ଦୁର୍ଜନ ସଙ୍ଗ ସହଜେ ବିଷ । ୧୩ ।

ଅମୃତ ଆହାର ସେ ନସ୍ତ୍ରରେ ବହୁତ ।
ଅମୃତ ସମ ଶୀତଳ ତହିଁ ଅମୃତ । ୧୪ ।

ଅମୃତ କୁସୁମମାନ ଫୁଟନ୍ତି ତହିଁ ।
ସିତ ଅସିତ ଲୋହିତ ବର୍ଣ୍ଣିରୁ ବହି । ୧୫ ।

ଅନେକ ଅମୃତଚର ପତଙ୍ଗମାନେ ।
ଆନନ୍ଦେ ବିହରନ୍ତି ସେ ଅମୃତ ସ୍ଥାନେ । ୧୬ ।

ଅବଗାହି ମାତ୍ରକେ ହୁଅନ୍ତି ପବିତ୍ର ।
ବିମଳ କ୍ଷେତ୍ର ପ୍ରସାଦୁଁ ଏ କି ଉଚିତ । ୧୭ ।

ଯହିଁ ଜଳେ ପକ୍ଷୀ ଧରେ କାଳ ଅଣ୍ଡଜ ।
ବିଷ୍ଣୁ ପ୍ରାପ୍ତେ ଗଦା ପଦ୍ମ ଶଙ୍ଖ ଅମ୍ବୁଜ । ୧୮ ।

ବିସ୍ତାର କରି କେତେ କହିବି ତାହା ।
ବେଦ ବେଦାନ୍ତେ ଗୋଚର ନୋହିବ ଯାହା । ୧୯ ।

ପନ୍ତି ପନ୍ତି ହୋଇ ପୁର ଅନେକ ତହିଁ ।
ଜଡ଼ାଜଡ଼ି ହୋଇଛନ୍ତି ବିଲଗ ନାହିଁ । ୩୦ ।

ସୁଧା-ଲେପମାନଙ୍କରେ ସୁନ୍ଦର ଭଣ୍ଡି ।
ସହଜେ ଜିଣନ୍ତି ପୂର୍ଣ୍ଣ ଚନ୍ଦ୍ରମା ଜ୍ୟୋତି । ୩୧ ।

ହଟର ଘଟରେ ବଡ଼ ଶୋଭା କେ ପାଏ ।
ନିର୍ମଳ ହୃଦରେ ଅନୁରାଗ ପରାଏ । ୩୨ ।

ବାତାୟନମାନେ ତହିଁ ଦିଶନ୍ତି ଶୋଭା ।
ବିଲୋକନ ମାତ୍ରକରେ ନୟନ ଲୋଭା । ୩୩ ।

ନାଗରୀଙ୍କ ଗୃହଁ ବାରୁ ଏମନ୍ତ ଦିଶେ ।
କାମକାଣ୍ଡ ଦୁର୍ଗ ଦଣ୍ଡ ପରାୟେ କି ସେ । ୩୪ ।

ରାଜମାର୍ଗମାନ ମହାଶୋଭାକୁ ପାଏ ।
ଅବନୀ କାମିନୀ ଶିର ସୀମନ୍ତ ପ୍ରାଏ । ୩୫ ।

ଗତାଗତ ଲୋକରେ ଅତ୍ୟନ୍ତ ଗହଳ ।
ହସ ଚରିତ ଗୀତରେ ଅତି ଚହଳ । ୩୬ ।

ଅନେକ ବର୍ଣ୍ଣର ଲୋକେ ଅଛନ୍ତି ରହି ।
ଯେ ଯାହାର କର୍ମଧର୍ମମାନଙ୍କୁ ବହି । ୩୭ ।

ଏମନ୍ତ କ୍ଷେତ୍ରରେ [illegible]ନ ମହା ସମ୍ପତ୍ତି ।
ବିଜୟେ ଶ୍ରୀ ଜଗନ୍[illegible] ଦେବ ନୃପତି । ୩୮ ।

ଅପାରୁ ଅପାର ତ[illegible]ମା ।
ଅଦ୍ୟହିଁ ଜାଣି ନା[illegible]ହ୍ମା । ୩୯ ।

ଅଶେଷ ବ୍ରହ୍ମାଣ୍ଡେ [illegible] ସେହି ।
ତାଙ୍କ ସମ ହୋଇ[illegible] କେହି । ୪୦ ।

ଇନ୍ଦ୍ର ଚନ୍ଦ୍ର ଆଦି ଯେତେ ଅମରଗଣ ।
ଥିବରତେ ତାହାଙ୍କ ଚରଣେ ଶରଣ ।୪୧।

ସ୍ଥିତି ଆଦି ଅନ୍ତର ସେ ଆଦି କାରଣ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ପ୍ରାଣ ।୪୨।

ଦେଲେହେଁ ଇତରେ ଚତୁର୍ବର୍ଗ ଦିଅନ୍ତି ।
ତାହାଙ୍କ ପରି ବ୍ରହ୍ମାଣ୍ଡେ ଦାନୀ ନାହାନ୍ତି ।୪୩।

ତାହାଙ୍କ ହୃଦରେ ଯେତେ କରୁଣା ଅଛି ।
ସମାନ କରିବାକୁ ତ ନ ଦିଶେ କିଛି ।୪୪।

ସମୁଦ୍ରକୁ ବୋଲିବା ସେ ସଂସାରେ ଅଛି ।
ମେରୁ ସେହିରୂପେ ତେଣୁ ନୁହଇ କିଛି ।୪୫।

ଅନନ୍ତ ନାମରେ କିଛି ଆକାଶ ଦିଶେ ।
ମେଘ ଅବା ଜଳଧାର ଯେସନ୍ତ ବରଷେ ।୪୬।

ଅଶେଷ କରୁଣା କିଛି ନୁହଇ ଶେଷ ।
ଲେଶ କହି ନ ପାରନ୍ତି ଶେଷ ମହେଶ ।୪୭।

କୋଟି କୋଟି ସୂର୍ଯ୍ୟ ସମ ନୋହେ ତେଜକୁ ।
ଅଚ୍ଛାଦେ ଜିଣନ୍ତି ସେ କୋଟି ଚନ୍ଦ୍ରକୁ ।୪୮।

ମାଧୁର୍ଯ୍ୟରେ ଯେସନ୍ତ ନାଗରମାନଙ୍କ ଗୁରୁ ।
ମନ୍ଦା ଅରତେ ଡାକିଲେ ଶୁଣନ୍ତି ଦୂରୁ ।୪୯।

ନୃଶଂସ ବଂଶକୁ ସେ କରନ୍ତି ବିଧ୍ୱଂସ ।
ଅଳପକେ ଅବାରକୁ ଯେମନ୍ତ ଦଂଶ ।୫୦।

ଦୁଃଖୀ ଲୋକମାନଙ୍କର ଦୁଃଖ ହରନ୍ତି ।
ପ୍ରାତଃକାଳୁ ଲୋକେ ତାଙ୍କ ନାମ ଧରନ୍ତି ।୫୧।

ସମସ୍ତ ଜୀବଙ୍କୁ ସଦାବର୍ତ୍ତି ଦିଅନ୍ତି ।
ଅଭାବକୁ ଦୂର ଭାବେ ବଶ ହୁଅନ୍ତି । ୫୨ ।

ଶତ୍ରୁ ହୋଇ ଶରଣକୁ ଯେବେ ଆସଇ ।
ଅଭୟ ପଞ୍ଝରେ ପଶି ଭୟ ନାଶଇ । ୫୩ ।

ରସିକ ବିବେକ ମହା—ଧୈର୍ଯ୍ୟବନ୍ତ ।
ସବୁ ରୂପେ ତାହାଙ୍କ ଚରିତ ଅମୃତ । ୫୪ ।

ଅଣେବନ୍ତ ପଣ ତାହାଙ୍କର ଏମନ୍ତ ।
ଅଣୁହିଁ କହନ୍ତି ମେରୁ ପର୍ବତ ମତ । ୫୫ ।

କୃପା କଟାକ୍ଷରେ ସେ ଯାହାକୁ ଚାହାନ୍ତି ।
କୋଟି ଇନ୍ଦ୍ର ପଦ ବହି ତାକୁ ଦିଅନ୍ତି । ୫୬ ।

ଶେଷ କରି ନୁହଇ ସେ ତାଙ୍କ ମହିମା ।
ବ୍ରହ୍ମାକୁହିଁ ଅଗୋଚର ଯାହା ଗାରମା । ୫୭ ।

ଭୃତ୍ୟଜନବତ୍ସଲ ସେ ଅନାଥ ପାହ୍ନ ।
ପତିତ-ପାବନ-ବାନା ଅଛନ୍ତି ବହ୍ନ । ୫୮ ।

ଅପରାଧୀ ଅପରାଧ କରନ୍ତି କ୍ଷମା ।
ଅତିହିଁ ବଡ଼ ପ୍ରଭୁ ସେ ବଚନ କର୍ମୀ । ୫୯ ।

ଜଗନ୍ନାଥ ଦେବ ନରପତି ପରାଜ୍ୟେ ।
ଚଉଦ ଲୋକରେ ସମ ନାହାନ୍ତି ରାଜ୍ୟେ । ୬୦ ।

ସବୁ ଋତୁ ସୁଖଭୋଗ ଜାଣନ୍ତି ସେହି ।
ଶ୍ରୀବନ୍ତ ପ୍ରଭୁମାନଙ୍କର ଲକ୍ଷଣ ଏହି । ୬୧ ।

କେ କହିବ ତାହାଙ୍କ ଶ୍ରୀବନ୍ତ ଲକ୍ଷଣ ।
ଶ୍ରୀଚରଣ ଅଷ୍ଟାଦଶ ଚିହ୍ନରେ ଜାଣ । ୬୨ ।

ଶୀତ ଖରା ବରଷା ଏ ବାର ମାସରେ ।
କେତେ କେତେ ଉତ୍ସବ କରନ୍ତି ସଙ୍ଗରେ । ୬୩ ।

ସୁନ୍ଦର ପଣକୁ କାମ ଦାସ ପରାୟେ ।
ସହଜେତ ସେ ଦେବତାମାନଙ୍କ ପ୍ରାୟେ । ୬୪ ।

ବଳଭଦ୍ର ନାମେ ତାଙ୍କ ଅଗ୍ରଜ ଭ୍ରାତ ।
ମହାବଳବନ୍ତ ମହାସୁନ୍ଦର ଶ୍ୱେତ । ୬୫ ।

ମହା ପ୍ରତାପୀ ସେ ତାଙ୍କ ମହିମା ବଡ଼ ।
ମସ୍ତକରେ ବହିଥାନ୍ତି ନାଗେନ୍ଦ୍ର ଚୂଡ଼ । ୬୬ ।

ଜଗତ ଧରିବାରେ ସେ ଅତ୍ୟନ୍ତ ଦମ୍ଭ ।
ଜଗତିରେ ଯେସନେ ଏକା ରଜତ ସ୍ତମ୍ଭ । ୬୭ ।

ମହାଶତ୍ରୁ ମାରଣେ ସେ ମହାପ୍ରବଳ ।
ଶ୍ରୀକରତଳେ ବହନ୍ତି ହଳ ମୂଷଳ । ୬୮ ।

କାଦମ୍ବରୀ ରସରେ ସେ ଅତ୍ୟନ୍ତ ଭୋଳା ।
ଘୂରାଇ ପକାଉ ଥାନ୍ତି ଅରୁଣ ଡୋଳା ! ୬୯ ।

କୁନ୍ଦେନ୍ଦୁ ଶଙ୍ଖ କର୍ପୂର କୁମୁଦ କାନ୍ତି ।
ଶ୍ରୀଅଙ୍ଗରେ ତାହାଙ୍କର ସମ ନୁହନ୍ତି । ୭୦

ରଜତ ପର୍ବତ କୃଷ୍ଣ ମେଘ ପରାୟେ ।
କଟିତଟେ ନୀଳାମ୍ବର ଶୋଭାକୁ ପାଏ । ୭୧ ।

ସ୍ଫଟିକ ପର୍ବତ ଶୃଙ୍ଗ ପ୍ରାଏ ଶ୍ରୀଅଙ୍ଗ ।
ସ୍ଫୁଟ-କୋକନଦ ପ୍ରାଏ ନୟନରଙ୍ଗ । ୭୨ ।

କୋଟି କୋଟି ପୂର୍ଣ୍ଣଚନ୍ଦ୍ର ଜିଣେ ଶ୍ରୀମୁଖ ।
ଅବଲୋକନ ମାତ୍ରକେ ପଳାଏ ଦୁଃଖ । ୭୩ ।

ଶ୍ରୀବନ୍ତ ଶ୍ରୀବଳଭଦ୍ର ଭାଇଙ୍କ ସଙ୍ଗେ ।
ରତ୍ନସିଂହାସନେ ବିଜେ ବିବିଧ ରଙ୍ଗେ । ୭୪ ।

ଦେଖିବାକୁ ବେନି ଅଙ୍ଗ ଆତ୍ମାରେ ଏକ ।
ଧନ୍ୟ ଧନ୍ୟ ଧନ୍ୟ ନୀଳାଚଳ ନାୟକ । ୭୫ ।

କମଳା ନାମରେ ତାଙ୍କ ପାଟ ମହିଷୀ ।
ତାହାଙ୍କ ମହିମା କେ କହିବ ବିଶେଷି । ୭୬ ।

କୋଟି କୋଟି ଇନ୍ଦ୍ରାଦି କୁବେର ସମ୍ପତ୍ତି ।
ଯାହା କଟାକ୍ଷକୁ ଅପେକ୍ଷା କରି ଅଛନ୍ତି । ୭୭ ।

ଅଭୀଷ୍ଟଦାୟିନୀ ଅନ୍ନପୂର୍ଣ୍ଣା ସେ ଦେବୀ ।
ଅଷ୍ଟ ଐଶ୍ୱର୍ଯ୍ୟ ପାଇ ଯାହାକୁ ଭାବି । ୭୮ ।

ଦାରିଦ୍ର୍ୟ-ଭଞ୍ଜନ ଭୃତ୍ୟଜନ-ବତ୍ସଳା ।
ପ୍ରସନ୍ନଆନନୀ ପଦ୍ମବାସୀ ସୁଶୀଳା । ୭୯ ।

ଜଗତ ଜନନୀ ଜଗମୋହନ ପ୍ରାଣ ।
କେ ଅବା କହିବ ତାଙ୍କ ସୁନ୍ଦର ପଣ । ୮୦ ।

ସେ ଯାହାକୁ କୃପା କଟାକ୍ଷରେ ଚାହାନ୍ତି ।
ସମସ୍ତ ସୁନ୍ଦର ଯାକ ତହିଁ ଥାଆନ୍ତି । ୮୧ ।

ଜଗନ୍ନାଥ ଦେବ ନରପତିଙ୍କ ପାଦେ ।
ନିରନ୍ତରେ ସେବା ସେ କରନ୍ତି ପ୍ରମୋଦେ । ୮୨ ।

ଏମନ୍ତ ହୋଇ ଯହିଁରେ ଥିବେ ଦମ୍ପତି ।
ତହିଁ ଅପୂରୁବ ଅବା କଉଁ ସମ୍ପତ୍ତି । ୮୩ ।

ଯାହା ବୋଲେ ଧନପତି ଅଳକାନାଥ ।
ଅମରାବତୀର ପତି କୁଳିଶହାଥ । ୮୪ ।

ସେ ପ୍ରଭୁ ସମ୍ମୁଖ କେ କହିବାରେ ଶମ ।
ଯାହା ନାମେ ପଢନ୍ତୁ ନ ଦଣ୍ଡେ ଯମ । ୮୫ ।

ଏ ସଂସାରେ ଯହିଁ ପ୍ରଭୁ କଥାପ୍ରସଙ୍ଗ ।
କାଳସର୍ପ ଅଘାତନ୍ତୁ କଥାପ୍ରସଙ୍ଗ । ୮୬ ।

ଯାହା ନାମ ସୁନାଶୀର ଗଢ ବାଣ୍ଟନ୍ତୁ ।
ନ ହୁଅଇ ସଂଘାତ ସଂଘାତ ବେଣ୍ଟନ୍ତୁ । ୮୭ ।

ପକ୍ଷୀରାଜ ନାମେ ତାଙ୍କ ସେ ପାଣ୍ଟ ବାରୁ ।
ସାମ ବେଦ ଉଚ୍ଚାରଇ ଯାହା ଗଢରୁ । ୮୮ ।

ସେ ବାରୁ ଅରୋହି ଯେବେ କରନ୍ତି ବଜେ ।
ମନପବନ ଚକିତ ହୁଅନ୍ତି ଲଜ୍ଜେ । ୮୯ ।

ଅନୁତ୍ତମ ପ୍ରାସାଦ ହଇଲ ସୁନ୍ଦର ।
ଅବଲୋକନେ ସମସ୍ତ ମାନସ ହର । ୯୦ ।

ସୁଧାଲେପେ ପୂର୍ଣ୍ଣଚନ୍ଦ୍ର କର ଉଜ୍ଜ୍ୱଳ ।
ଝଟନ୍ତ କମରେ କର ହରଷେ ମଣ୍ଡଳ । ୯୧ ।

ବିଶ୍ୱକର୍ମାର ଯେ କର୍ମ ଗର୍ବ ଯାର ସେ ।
ଉପମାକୁ ନ ହେଷେ ମାନସେ ମାନସେ । ୯୨ ।

ଯହିଁ ପ୍ରାସାଦ ମସ୍ତକ ପତାକା ନେତ ।
ଉଡ଼ିଁ ପାଳ ଅମ୍ବରଥେ କରଇ ଘାତ । ୯୩ ।

ନାଟୁଅ ହସ୍ତକ ହାଥ ପରାଏ ଗଢ ।
ଉଚ୍ଚେ ଉଠି ପଢ଼ିବାରେ ଏମନ୍ତ ଛନ୍ତ । ୯୪ ।

ଆସ ଯାଅ ବୋଲଇ କି ଅର୍ଥିଜନଙ୍କୁ ।
ଏ ବାହାରେ ଆନ ନ ଆସଇ ମନକୁ । ୯୫ ।

ଆରତ ଭଞ୍ଜନ ପ୍ରଭୁ ଶରଣ ଦାତା ।
ଏହୁ ଅନୁରୂପେ ନାନା ଠାରେ ବକତା । ୯୬ ।

କେତେ ହେ କହିବ ସେ ପତାକା ଚରିତ ।
କହି ବସିଲେ ପଦ ହୋଇବ ବହୁତ । ୯୭ ।

ବହୁତ ହେଲେ ନ ରୁଚଇ ଅମୃତ ।
ଅମୃତୁଁ ଅଧିକ ଜଗମୋହନ ଗୀତ । ୯୮ ।

ଜଗନ୍ନାଥ ଦେବ ନରପତିଙ୍କ ସଭା ।
ସୁଧର୍ମା ସଭାକୁ ବଳ ଦଶଇ ଶୋଭା । ୯୯ !

ଉତ୍ତମ କବି ପଣ୍ଡିତ ଗାୟକମାନେ ।
ବନ୍ଦ ବନ୍ଦ୍ୟ ଶୁକଦେବ ପୁରାଣ ଗାନେ । ୧୦୦ ।

ଯେ ଯାହା ବିଦ୍ୟାରେ କୃତମୁଖ ସମସ୍ତେ ।
ଆନ ବିଦ୍ୟାବନ୍ତମାନେ ଅଛନ୍ତି କେତେ । ୧୦୧ ।

ବ୍ରାହ୍ମଣ ନିଯୋଗ ତାହାଙ୍କର ଅନେକ ।
ପଣ୍ଡା ପଶୁପାଳକ ସାମନ୍ତ ସେବକ । ୧୦୨ ।

ମନ୍ତ୍ରୀ ମାରକଣ୍ଡ ଶମ୍ଭୁ ବୁଝାମଣୀକୁ ।
ଚଣ୍ଡୀ ଭଇରବେ ଖଞ୍ଜା ନଗ୍ର ଠଣାକୁ । ୧୦୩ ।

ଏମନ୍ତେ ସେ ଜଗନ୍ନାଥ ଦେବ ନୃପତି ।
କମ୍ବୁ କଟକରେ ମହାସୁଖେ ଅଛନ୍ତି । ୧୦୪ ।

କ୍ଷମାଦାତା ଗୁଣଗ୍ରାହୀ ଭଗତ ପ୍ରିୟ ।
କାହାର ବିଷୟରେ ନୁହନ୍ତି ନିର୍ଦ୍ଦୟ । ୧୦୫ ।

ଦୁଖୀଲୋକ ଜଣାଇଲେ ଆଗ ସୁଗତ ।
ନ କହିଲ ଲୋକର ହୃଦୟ ଜାଣନ୍ତି । ୧୦୬ ।

ଅତି ବଡ଼ ବିବେକ ସେ ଦେବାଧିରାଜ ।
ଅନ୍ତେ ଜନମାନେ ଏକା ତାହାଙ୍କୁ ଭଜ । ୧୦୭ ।

ଅବଶ୍ୟ ତାରିବେ ସେ ଅନିତ୍ୟ ସଂସାରୁ ।
ଅତିହିଁ ଦାରୁଣ କାଳଦଣ୍ଡ ହିଂସାରୁ । ୧୦୮ ।

ଦୀନକୃଷ୍ଣ ବୋଲି ବୋଲି ହେଲା ନ କବି ।
କର ନ କର ଯେମନ୍ତ ଇଚ୍ଛା ତୁମ୍ଭର । ୧୦୯ ।

ମଧୁମାଛି ମୁଖୁଁ ମଧୁ ହେଲେ ବାହାର ।
ତାହା ନିନ୍ଦି କେହି ନ କରଇ ଆହାର । ୧୧୦ ।

ପଙ୍କୁ ଜାତ ହେଲେ ପଦ୍ମ ସବୁରି ପ୍ରିୟ ।
ଏ କଥା ବିଚାରି ହୁଅ ଶୁଦ୍ଧ ହୃଦୟ । ୧୧୧ ।

---

# ଦ୍ୱିତୀୟ ଛାନ୍ଦ

ରାଗ—କଲ୍ୟାଣ ଅହାରୀ

( ଚୋଖି ବାଣୀରେ ଗାଇବ )

ଅହେ ସାଧୁଜନମାନେ ଏବେ ଶୁଣ ଏକମନେ
ଜଗନ୍ନାଥ ଦେବ ନରପତିଙ୍କ ନୀତି
ରାତ୍ର ଥାଉଁ ଅପସ୍ମୃଡ଼ ହୋଇ ମଲ୍ୟମକୁ ବଡ଼
ଉତ୍ସାହରେ ସିଂହାସନେ ବିଜେ କରନ୍ତି
ଏଥିଅନ୍ତେ ସେବକେ ଆସି
କବାଟ ଫିଟାଇ ଧୀରେ ଭିତରେ ପଶି । ୧ ।

ଯେ ଯାହା ସେବା ଅବୋର ରହନ୍ତି ସେ ପଟୁଆ
ମଲ୍ୟମ ହୁଅନ୍ତି ପ୍ରଭୁ ଜଗତପତି
ନବ ପଞ୍ଚକ ଡଉପ ସମୁଦ୍ର ଫେନ ସ୍ୱରୂପ
କାଠି ଲାଗି ଜମିନ୍ତରେ ଲାଗି ହୁଅନ୍ତି
ତହୁଁ ଶ୍ରୀଫଳକୁ ଅନାଇ
ତଉଙ୍କ ଉପରେ ବିଜେ କରନ୍ତି ଯାଇଁ । ୨ ।

ଦାନ୍ତକାଠି ଗୁଆଗୁଣ୍ଡ ଲବଣୀ ତ୍ରିଫଳା ପିଣ୍ଡ
ସୁବାସଜଳ ଦର୍ପଣ ଲୁଣ୍ଡ ଆଣନ୍ତି
ଖଟଣି ସାମନ୍ତମାନେ ଉଚିତ ବିଧି ବିଧାନେ
କାଠି ଲାଗି ମାଜଣା ସେବାକୁ ବସନ୍ତି
ଏଥିଅନ୍ତେ ଜଗନ୍ନିବାସ
ଦିବ୍ୟ ବାସ ଲାଗି ହୋଇ ହୁଅନ୍ତି ବେଶ । ୩ ।

ସେ ସୁବେଶ ଶୋଭା ଶୃହିଁ ଉପମା ନ ଦିଶେ କାହିଁ
କେବଳ ମାଧବ ମୋହ ହୁଅଇ ମନ
ବଚନକୁ ଅଗୋଚର ପୁଲକ ଉଠେ ଶରୀର
ଅପଲକ ହୋଇ ରହେ ବେନି ନୟନ
ଦାଚଦ ଖଣ୍ଡୁଆ ଦୋସୋଡ଼ା
ବାଚଦରୁ ବଚଦ ସେ ଧଇର୍ଯ୍ୟ ଚୂଡ଼ା । ୪ ।

ସୁବର୍ଣ୍ଣ କେତକୀ ତୋଷ ଦିଶଇ ଯେମନ୍ତ ତୋଷ
ସେହି ରୂପେ କରଇ ସେ ମନକୁ ତୋଷ
ମଣି କୁଣ୍ଡଳ ମେଖଳା କଟକ ବାହୁଟ ମାଳା
ଏକେ ଏକେ ମହାସୁଖପଦନ ପରି
ଯେଉଁ ବେଶେ ଦେବାଧିରାଜ
ସେହି ରୂପେ ଭାଇ ବଳଭଦ୍ରଙ୍କ ସଜ । ୫ ।

ଅଭେଦ ଭାବରୁ କର ଏକାବେଳେ ଶୀଘ୍ର ସାର
ଏକାବେଳେ ମଣୋହିରେ ବଜେ କରନ୍ତି
ଏ ପୀତ ସେ ନୀଳାମ୍ବର ହେଲେହେଁ ମାଧ ଅମ୍ବର
ବାସ ଅନୁରୂପରେ ସେ ଲାଗି ହୁଅନ୍ତି
ଏକ ଆତ୍ମା ବେନି ଶରୀର
ଏ ରୂପେ ସୁଭଦ୍ରା ଭଦ୍ରା ଭଉଣୀ ତାଙ୍କର । ୬ ।

ଏମନ୍ତେ ସେ ଅବକାଶ ହୁଅନ୍ତେ ଜଗନ୍ନିବାସ
ଅନେକ ଲୋକ ପ୍ରବେଶ ହୁଅନ୍ତି ଆସି
କେ ଅଲଟ କେ ଚାମର କେ ପଙ୍ଖା ନାନାପ୍ରକାର
ବୀଣା ରବାବ [illegible] ବଇଶୀ

ଆନନ୍ଦେ ଦର୍ଶନ କରନ୍ତି
ଅଶେଷ ଦୁରିତ ଦୁଃଖମାନ ହରନ୍ତି । ୭ ।

କେ ହରଷେ ନୃତ୍ୟ କରି    ବେ ବୋଲନ୍ତି ହରି ହରି
ଜୟ ଉଲ ଜୟ ଉଲ କେ ଜପେ ଜପେ
ଏହି ପ୍ରକାରେ ଗହଳ    ଚହଳ ଅତି ପ୍ରବଳ
ଶ୍ରୀ ଜଗମୋହନରୁ ସିଂହାସନ ଯାଏ
ନୀଳଗିରି ନବର ଯାକ
ପୂରି ରହିଥାନ୍ତି ନାନା ପ୍ରକାର ଲୋକ । ୮ ।

ବ୍ରହ୍ମାଦି ଶଙ୍କର ଦେବେ    ଯେ ଯାହା ଭକତି ଭାବେ
ଶ୍ରୀ ଭିତ ମଧ୍ୟେ ଶୂନ୍ୟ ପ୍ରାୟେ ଥାଆନ୍ତି
ଆନ ଆନ ଦେବାଦେବୀ    ଧରି ମାନବଙ୍କ ଛବି
ଜଗନ୍ନାଥ ଦେବଙ୍କ ଦର୍ଶନ ପାଆନ୍ତି
ଧନ୍ୟ ଧନ୍ୟ ଧନ୍ୟ ସେ ଶୋଭା
ଲାଗିଥାଇ ଦେଖିବାର ସେ କାଳ ଶୋଭା ।୯।

ଅବକାଶ ଶେଷେ ଡାକ    ପାଡ଼ନ୍ତେ ବାହାର ଲୋକ
ବେଢ ଧରି ଦୁଆରେ ରହନ୍ତି ଦୁଆରୀ
ଗୋପାଳ ବଲ୍ଲଭ ନାମ    ଶୀତଳ ଭୋଗ ଉତ୍ତମ
ମଣୋହି କରନ୍ତି ପ୍ରଭୁ ଶାରଙ୍ଗଧାରୀ
ମଣ୍ଡା କୋରା ଲବଣୀ ଦହି
ଶାକର ସର ପାପୁଡ଼ି ଟିଙ୍ଗାର ଖଇ । ୧୦ ।

ଏ ଆଦି ଅନେକ ଦ୍ରବ୍ୟ    ମଣୋହି ବଢ଼ାଇ ଦେବ
ଆଚମନ ଘାରେ ସେ ଶ୍ରୀମୁଖ ପୋଛନ୍ତି

ଶ୍ରୀ ମହାପ୍ରସାଦ ଅଶେଷ ସେବକମାନେ ହରଷେ
ଯେ ଯାହା ଅନୁରୂପରେ ଯାଇ ଗୃହାନ୍ତି
ଗୃହ୍ନ ଛନ୍ତି ଜଗଦୀଶ୍ୱର
ଷମୁରେ ଯେ ହେଉଥାଇ କୈବଲ୍ୟ କୂର ।୧୧।

ଅହା ସେ ସମୟ ଦେଖି ମନ ହୁଏ ମହାଖୁସି
ମନ ସେ ଜାଣଇ ଜଗବନ୍ଧୁ ଜାଣନ୍ତି
ଏହା ଦେଖି ଦେଖି ପ୍ରାଣୀ ଅବିବେକ ଭାବୁ ପୁଣି
ଇନ୍ଦ୍ର ସମ୍ପତ୍ତିକୁ ବଡ଼ କରି ଗଣନ୍ତି
ମାନବ ଶରୀରକୁ ପାଇ
ଏତେ ସୁଖ ଥାଉ ମନ ଅନକୁ ଦେଇ । ୧୨ ।

ଜପ ତପ ଦାନ ତୀର୍ଥ ପ୍ରମାଣ ଏ ପରମାର୍ଥ
କରୁଥିବ ଜଗନ୍ନାଥ ଦର୍ଶନ ଯାଏ
ନାନା ହଟ ନଟ କୁଟ ସୌଖ୍ୟାଦ ବଣିକ ବାଟ
ଉଦର ନିମନ୍ତେ ସିନା ନାନା ଉପାଏ
ଅନ୍ଧାରକୁ ନାଶେ ପ୍ରଦୀପ
ଆନନ୍ଦ-କନ୍ଦ ଦର୍ଶନେ କି ମହାପାପ ? । ୧୩ ।

ଏବେ ଶୁଣ ଦିବ୍ୟ ରସ ସକଳ ଧୂପ ପ୍ରବେଶ
ହେବା ସମୟରେ ଲୋକ ବାହାର ହୁଏ
ପାଳ ପଡିହାରି ଯାଇ ଯେ ଯାହା ସେବା ଜଗଇ
ମଣୋହିରେ ବଳେ ପ୍ରଭୁ ଦେବାଧିଶ୍ୱେ
ନାଡ଼ୁ ନଡ଼ୁ କଦଳୀ ପୁଲୀ
ନାନାରୂପେ ପିଠା ସୁଧାରସକୁ ବଳି । ୧୪ ।

ଖେଚୁଡ଼ି ଦ୍ରବ୍ୟ ଅଭଡ଼ା    ଅନେକ ପ୍ରକାରେ ବଢ଼ା
ବଢ଼ା ହୋଇ ଦ୍ରବ୍ୟ ବ୍ୟଞ୍ଜନାଦି ସେ ଯେତେ
ଅଣେ ଅଣେ ବୋଲି ଡାକ    ଆସନ୍ତୁ ପାଶକୁ ହାକ
ନେଉଥାନ୍ତି ମହା ସୂପକାରେ ତା କେତେ
ଯହିଁ ଦେବରାଜ ଭୁଞ୍ଜୁଥା
ବାଞ୍ଛିବାକୁ ତହିଁ କ୍ଷୀରସାଗର ସୁତା । ୧୫ ।

ଧୂପଦୀପ ଅନ୍ତେ ଝେର    ପଡ଼ିବା ଶେଷକୁ ତୋଷ
ହେଉଥାନ୍ତି ଲୋକେ ଦେଖିବାକୁ ଅଳଘ
ଚନ୍ଦ୍ରକୁ ଚକୋର ପ୍ରାଏ    ହୋଇ ଏକଧାନ ଲୟେ
କବାଟ ଫିଟିଲେ ଜଗଜ୍ଜ୍ୟୋତି ଦେଖନ୍ତି ।
ଜୟ ଜୟ ଶବଦ ଗୋଳ
ପ୍ରତେ ହୁଏ ସେ ଜଳନିଧି ଉଛୁଳି । ୧୬ ।

ସେ ଅଳତି ବନ୍ଦାପନା    ଶ୍ରୀମୁଖ ଜ୍ୟୋତି ଜ୍ୟୋତ୍ସ୍ନା
ଦେଖିବାର ଲାଗିଥାଉ ଜନ୍ମ ଜନ୍ମାନ୍ତେ
ଜନନୀ ଜଠର ଜଳେ    ସ୍ନାନ ନାହିଁ ଆଉ ବେଳେ
ଏମନ୍ତ ଭକ୍ତର ମନ ନାଶନ ଚତ୍ରେ
ତହିଁ ହୁଏ ସାମ୍ନାଣ ମେଳ
ଅହା ସେ ସମୟ ସୁଖ ନାହିଁ ଦେଖିଲା । ୧୭

କେ କେତେ ରୂପେ ଜଣାନ୍ତି    କେ କେତେ ସ୍ତୁତି ଶୁଣାନ୍ତି
କେ କେତେ ପ୍ରକାରେ ତହିଁ କରେ ଗୁହାର
ଯେତେ ଜଣାଇଲେ ବଳ    ପଛ ହୋଇ ରହ
ବୋଲିବାକୁ ଶକ୍ୟ ତହିଁ ନାହିଁ କାହାର ।

ସହଳେ ତ ଅଷ୍ଟାବିଧାନୀ
ସବୁର କଥା ପେନନ୍ତୁ ଶ୍ରବଣ ଘେନ । ୧୮ ।

ଏମନ୍ତେ ଥୋକା ଏ ବେଳ          ଉତ୍ତାରେ ଭୁଞ୍ଜେ ଗହଳ
ମଲ୍ୟମ ହୋଇ ସ୍ୱଦେଶେ ବଜେ କରନ୍ତି
ବହୁତ ମୂଲ୍ୟ ଅମ୍ବର          ଦଶେ ଅଭ ଅଡ଼ମ୍ବର
ଉତ୍ତମ କର ଶ୍ରୀଅଙ୍ଗେ ଲାଗି ହୁଅନ୍ତି
ଫୁଲ୍ ଚୂଲ ମାଲ ସୁନ୍ଦର
ଫୁଲୁ ଥାଇ ହୃଦୟେ ଦେଖିବା ଲୋକର । ୧୯ ।

ଏମନ୍ତେ ବେଶ ବଢ଼ାଇ          ସମସ୍ତ ଲୋକ କଢ଼ାଇ
ମଣୋହିରେ ବେନ ଭାଇ ବଜେ କରନ୍ତି
ଉତ୍ତମ ଅନ୍ନ ବ୍ୟଞ୍ଜନ          ଈଶ୍ୱର ମନରଞ୍ଜନ
ମହାସୂପକାରମାନେ ନେଇ କରନ୍ତି
ନାଡ଼ୁ ଲଡ଼ୁ ଡାଳମ୍ବ ଗଜା
କାକରା ଅଳଷା କାନ୍ତି କଦଳୀ ଭଜା । ୨୦ ।

ଘୃତପୁଳ ଶରପୁଳ          ଅମୃତର ରସାବଳୀ
ପୁନ ହଂସକେଳ ଆଦ କର୍ପୂରକେଳ
ଖିର ଖିରଶା ଅମୃତ          ଦୁଧ ଗୋଟିକା ବହୁତ
ଚସାଦଧି ଆଦ ଏଥି ଥାଆନ୍ତି ମିଳ
ସର ଇକ୍ଷୁ ପଇଡ଼ ନଦା
ଦଉଭସ ସଭସ୍ୱା ଯେ ମନ ବନ୍ଧା । ୨୧ ।

ଚାଉଳ ପାରକାଠକ          ଖଇରଚୂଅ ଅନେକ
ଘୋଲ ବଡ଼ା ଆଦ କେତେ କେତେ ହୁଅନ୍ତି

୨ ଜଗମୋହନ ଛନ୍ଦ

ମହାସୁଆର ତା ନେଇ          ଅସଇ ପତ୍ରରେ ଥୋଇ
ପତ୍ର ପତ୍ର କଇ ପତ୍ରବଡ଼ି ଥୁଅନ୍ତି
ଏହିରୂପେ ଭୋଗ ଅପାର
ମଣୋହି କରନ୍ତି ପ୍ରଭୁ ଜଗଦୀଶ୍ୱର । ୧୨ ।

ଏମନ୍ତେ ହୁଇ ପ୍ରହର          ଧୂପ ଶେଷ ଦେବବର
ମଲ୍ୟମ ହୋଇ ପ୍ରବେଶ ହୁଅନ୍ତି ପୁଣି
ପୁରୁଷୋତ୍ତମ ବଲ୍ଲଭ          ବଢାଇ ଦେବ ବଲ୍ଲଭ
ଛତ୍ର ବଢ଼ାବନ୍ତି ଲୋକ ହୃଦୟ ଜାଣି
ପହୁଡ଼ିବା ବେଳ ଜାଣନ୍ତି
ଖଟ ଶେଜ ଶେଜ ଖଟ ଲୋକେ ଆଣନ୍ତି । ୧୩ ।

ବିବିଧ ବନ୍ଧ ପିଭୁଲ          ବିଚିତ୍ର ଢମରେ ଝୁଲ
ନାନା ରତ୍ନ ମଣି ମାଣିକ୍ୟରେ ମଣ୍ଡିତ
ଯାର୍ ଡାଳକ ଡାଳକୁ          ଦର୍ଶନ କରିବାରକୁ
କରିବାରେ ଏକେ ଏକେ ମହା ପଣ୍ଡିତ
କେ କହିବ ସେ ଖଟ ଶୋଭା
ନଟ ହୋଇ ରହେ ମନ ନୟନ ଲୋଭା । ୧୪ ।

ତଥିପଟ୍ଟ ପାଟ ତୋଳି          ବିବିଧ ବର୍ଣ୍ଣେ ମୁଢ଼ୁଲି
ଉପରେ ଶୁକଲ ଝୀନ ବାସ ପକାଇ
ଖଟ ଶେଯ ମେଢକାପେ          ଶେଜ ସଜାଇ ଏରୂପେ
ଆସନ୍ତି ଦର୍ଶନ କରି ଅଲଗା ହୋଇ
ପହୁଡ଼ନ୍ତି ଦେବାଧିଦେବ
ଏଥିଅନ୍ତେ ଶୁଣ କ୍ଷେତ୍ର ବ୍ୟବସ୍ଥା ଭବ । ୧୫ ।

ଅନେକ ଦୀନ ବୈଷ୍ଣବ          ଅନାଥ ଅବଳା ଦେବ
ଯୋଗୀ ସନ୍ନ୍ୟାସୀ ଯାହାଙ୍କୁ ଯେମନ୍ତ ଇଚ୍ଛା
ଦିଅନ୍ତି ତାଙ୍କୁ ସେ ରୂପେ          ଏ ବାହାରେ ନାନା ରୂପେ
ଦିଅନ୍ତି ଦୁଃଖୀ ଦରିଦ୍ର ଭକ୍ତଙ୍କ ପୁଞ୍ଜା
ଦେବାଙ୍କୁ ଏ କୈବଲ୍ୟ ଛତ୍ର
ଜଗନ୍ନାଥ ଦେବ ନୃପବର ସେ ପାତ୍ର । ୨୬ ।

ଆଉ ଯେ ନ ଥିବ କାହିଁ          ବ୍ରହ୍ମାଣ୍ଡେ ଦେଖିଲୁ ନାହିଁ
ନୋହିଛି ନୋହିବ ଏଡ଼େ ବଡ଼ ଠାକୁର
ଏହି ଯେଉଁ ସିନା ଭାବେ          ବ୍ରହ୍ମାଦି ଶଙ୍କର ଦେବେ
କଙ୍କର ମତଙ୍କୁ ସୀଉକାର ତାଙ୍କର
ଆମ୍ଭେମାନେ ଏମନ୍ତ ଜଡ଼
କ୍ଷଣଭଙ୍ଗ ଦେହ ବହି ବୋଲାଉ ବଡ଼ । ୨୭ ।

ଏବେ ଅପହ୍ନୁଡ଼ ହେବା          ପ୍ରସଙ୍ଗ ଶୁଣ କହିବା
ଅସ୍ତ ଅଚଳରେ ଦିନବନ୍ଧୁ ପ୍ରବେଶ
କମଳ ହାସ୍ୟ ମୁଦ୍ରିତ          କୁମୁଦ ମୁଦ ବିଦିତ
ଚକ୍ରବାକ ଚକ୍ରବାକୀ ସଙ୍ଗ ବିନ୍ୟାସ
ଅନ୍ତରଙ୍କୁ ହୋଇ ଦିବସ
ପୁରେ ପୁରେ ପ୍ରଦୀପ ପ୍ରତାପ ପ୍ରକାଶ । ୨୮ ।

ସନ୍ଧ୍ୟା ସ୍ମରନ୍ତି ଦ୍ବିଜେ          ଦେବ ପୁରେ ଶଙ୍ଖ ବାଜେ
ଘୋର ମନ୍ଦ୍ର ତାରେ ସେ ଏମନ୍ତ କହଇ
ଜନ ଲୋକେ ନାହିଁ ନାହି          ଅନାଥ ଲୋକଙ୍କୁ ପାହି
ଜଗନ୍ନାଥ ଦେବରାଜ ପଡ଼ିଏ ହୋଇ

ଏହା ଶୁଣି ଶ୍ରୀ ଦେବରାଜେ
ଅପହୃତ ହୋଇ ଅବକାଶରେ ରାଜେ । ୨୯ ।

ଅଳପ ନିଦ ଅଳସେ ନୟନ ଘୂମିତ ହାସେ
ଶ୍ରୀମୁଖଚନ୍ଦ୍ର ଦିଶଇ ଅତି ସୁନ୍ଦର
ଜନ ହୃଦୟ କୁମୁଦ କୁମୁଦ ସୁଖ ସମ୍ପଦ
ନୟନ ଚକୋରଙ୍କର ଆନନ୍ଦପୂର
ଜୟ ଜୟ ଶବଦ ଗୋଳ
ପ୍ରଚଣ୍ଡ ହୁଅଇ ସେ ଘୀରଦିକ୍ ଉଛୁଳ । ୩୦ ।

ଧନେକ ଦୀପ ହନୁଡ଼ି ଜଳନ୍ତି ସେ ଧାଡ଼ି ଧାଡ଼ି
ରାତହିଁ ଦିବସ ପରି ହୋଇ ପ୍ରକାଶେ
ଚନ୍ଦ୍ରଦୀପ ଅବା କେତେ ଚନ୍ଦ୍ର ଉଦିଆଇ ସତେ
ଚନ୍ଦ୍ର ଉଦେକାଳେ ଚନ୍ଦ୍ରଉଦିଆ ନାଶେ
ଏକେ ସେ ଯେ ଜଗମୋହନ
ଆମୋଦେ ଆମୋଦ କରେ ଜଗତ ମନ । ୩୧ ।

ଅନେକ ଅଲଟ ପଙ୍ଖା ଭ୍ରମରେ ନୁହଇ ଲେଖା
ପଡ଼ିବା ଗହଳେ ପଶି ଯାଇ ନୁହଇ
ଅନେକ ଦୂରରେ ଥାଇ ଚାହିଁଲେ ଦର୍ଶନ ପାଇ
ପରମ ଆନନ୍ଦ ସୁଖ ମନକୁ ଦେଇ
ଦ୍ୱାରେ ରହିଥାନ୍ତି ଦୁଆରୀ
ବଡ଼ ବଡ଼ ଯୋଡ଼ା ବେତ-ମାନଙ୍କୁ ଧରି । ୩୨ ।

ଖଟ ଶେଯ ଲୋକେ ଯାଇ ଖଟ ଶେଯ ଘେନିଯାଇ
ଯତ୍ନ କରି ଯେ ଯାହାର ସ୍ଥାନେ ରଖନ୍ତି

ଶୃଙ୍ଗାର ସେବକ ନେଇ      ଗଲା ଶୃଙ୍ଗାର ଖଟଇ
ଖଟଣି ସାମନ୍ତମାନେ ସେବା କରନ୍ତି
ଆହା ସେ ସୁବେଶ ଚରିତ
ସୁମରି ଭାବିଲେ ନାଶ ହୁଏ ଦୁରିତ । ୩୩ ।

ବିବିଧ କୁସୁମ ଗଭା      ଦିଶଇ କେମନ୍ତ ଶୋଭା
ତାହା କେ ବଚନେ କହି କରିବ ଶେଷ
ସହସ୍ର ମୁଖରେ ଶେଷ      ସହସ୍ରେ ବର୍ଷରେ ଶେଷ
କରି ନ ପାରିବେ ଯେଉଁ ଶୋଭାରୁ ଲେଶ
ଆହା ସେ ଶ୍ରୀମୁଖ ମଣ୍ଡଳ
ଯାହା ଲାଗି ଶୋଭା ଅବତଂସ କୁଣ୍ଡଳ । ୩୪ ।

ଯେଉଁ ଶ୍ରୀଅଙ୍ଗ ଭୂଷଣ—      ମାନଙ୍କର ବିଭୂଷଣ
ତହିଁ ନବ ମଣ୍ଡନକୁ ମଣ୍ଡନ କରି
କେବଳ ଈଶ୍ୱର ଅଙ୍ଗ      ହେଲେ ଆଭରଣ ଭଙ୍ଗ
ଆଉ କି ଅଧିକ ନିଜସମ୍ପତ୍ତି ଶିରୀ
ଦୁହେଁ ଦୁହିଁଙ୍କର ଭୂଷଣ
ଚନ୍ଦ୍ର ନିଶା ଘନ ବିଦ୍ୟୁ ପରିଏ ଜାଣ । ୩୫ ।

ଏମନ୍ତେ ଅମୂଲ୍ୟ ବେଶ      ବଢ଼ାଇ ଜଗନ୍ନିବାସ
ମଣୋହି କରନ୍ତି ସଙ୍ଗେ ଅଗ୍ରଜ ଘେନି
ଅନେକ ରୂପେ ଅମୃତ      ମଣୋହି ଦ୍ରବ୍ୟ ବିହିତ
ଷଡ଼ରସେ ରଚିଥାନ୍ତି ସିନ୍ଧୁନନ୍ଦିନୀ
କେତେ ତା କହିବା ବିସ୍ତାର
ମଣୋହି ଶେଷରେ ଯାହା ଲାଗି ନିସ୍ତାର । ୩୬ ।

ଭୋଗ ଶେଷେ ଆଚମନ      ବଢ଼ାଇ ଜଗମୋହନ
ଶ୍ରୀମୁଖ ପୋଛି ବଢ଼ାଇ ବିଡ଼ିଆ ଲାଗି

ବଡ଼ ଅବକାଶ ବେଳ ବଡ଼ ଗହଳ ଚହଳ
ଅହା ଜନ୍ମେ ଜନ୍ମେ ଥାଉ ସେ ସୁଖ ଲାଗି
ବିବିଧ ପ୍ରକାରେ ସଙ୍ଗୀତ
ମାର୍ଗଦେଶୀ ମିଶି ହେଉଥାଇ ବହୁତ । ୩୭ ।
ତାଳ ମର୍ଦ୍ଦଳ ବଇଁଶୀ ବୀଣା ରବା ଯନ୍ତ୍ର ମିଶି
ମଧୁର ସୁସ୍ୱର ଗୀତ ମୋହେ ମନକୁ
ଗୂଢ଼ ପ୍ରବନ୍ଧ ପ୍ରବନ୍ଧ ଷ୍ଟପ୍ରାନାଗ ଆଦ ବନ୍ଧ
ଗୀତରେ ଦିଶାଇ ସ୍ୱର ଲପ୍ପମାନଙ୍କୁ
କେତେରୂପେ କେ କରେ ଗାନ
ଏକମନେ ସାବଧାନ ଜଗମୋହନ । ୩୮ ।
ରସିକ ନାଗର ବର ରମାକଣ୍ଠ-ମୋତିହାର
ଅତୁଲ୍ୟ ଅମୂଲ୍ୟ ମରକତ ନାୟକ
ଅମର କୁମୁଦ ଚନ୍ଦ୍ର ଅଋକଣ୍ଠ ମୃଗେନ୍ଦ୍ର
ସମସ୍ତ ଲୋକଙ୍କ ଆନନ୍ଦ ସୁଖ ଏକ
ସବୁଠାରେ ସମାନ ଗ୍ରହି
ଏମନ୍ତ ହୋଇ ଲୋକଙ୍କୁ ନ ଥିବ ପାହି । ୩୯ ।
ଯେମନ୍ତେ ସେ ପ୍ରଭୁ ପଣ ସେହି ଅନୁରୂପେ ଗୁଣ
ଭୁଜବଳ ଅନୁରୂପେ ଦଅନ୍ତି ଦାନ
ଏମନ୍ତ ନେତ ଅଦ୍ଭୁତ ଗୃହିଁବାର ସେହିମତ
ଭାବେ ବଣ ଅଭାବକୁ ଅତହିଁ ମାନ
ଅହେ ଜନେ ସମସ୍ତେ ତେଜ
ଦୀନକୃଷ୍ଣ ବୋଲେ ସେହି ପ୍ରଭୁଙ୍କୁ ଭଜ । ୪୦ ।

# ତୃତୀୟ ଛାନ୍ଦ

( ରାଗ କଲ୍ୟାଣ ପନ୍ତରାବ)

ଏଥୁ ଅନନ୍ତରେ ସୁସାଧୁ ଜନେ
ଆନନ୍ଦ ମନ ହୋଇ ଏକସ୍ଥାନେ ।
ଉଲ୍ଲସି ହୋଇ ସନ୍ଧ୍ୟାଧୂପ ବେଶ
ବଡ଼ଶିଙ୍ଗାରେ ବିଜେ ଜଗଦୀଶ ।
ବିଚିତ୍ର ବାସ କର୍ପୂର ହେଉଛି
ଚିତ୍ତେ ଲାଗି ହୁଅନ୍ତି ଯେ କାଛି ।
ଏଥି ଉତ୍ତାରୁ ଚଭୁସମ ଲାଗି
ଗୃହେଁ ଯେ ଥାନ୍ତି ଲୋକେ ଯାହା ଜଗି
ଚିତ୍ତରେ ହେଉଥାଇଁ ଯେଉଁ ସୁଖ
ମନ ଜାଣଇ ଜାଣେ ପଦ୍ମମୁଖ । ୫ ।
ଛଇଲବର ପଣରେ କେ ପର
ପରହରଣ ହୀନ ପତନ କର ।
ଅନେକ ଫୁଲ ଅନେକ ପ୍ରକାରେ
ଆସି ଯେ ଥାଇ ଅନେକ ଯତ୍ନରେ ।
ଅନେକ ପ୍ରକାରେ ତାଙ୍କ ବାସନା
ଏ ଦେହ ଶ୍ରୀଅଙ୍ଗେ ଲାଗନ୍ତି ସିନା ।
ଆହା ସେ ଧନ୍ୟ କର୍ପୂର ଜାଇ ।
ଅଧର ତଳେ କି ଭାଗ୍ୟରୁ ଥାଇ ।
କେ ରହେ ଶିରେ କେ ରହେ ହୃଦରେ
କେ ରହେ ଲଲାଟ ପଟ୍ଟ ତଟରେ । ୧୦ ।

କେ ଯାଇ ଲାଗେ ଅଭୟ ଚରଣେ
କେ ରହେ କରେ ସୁବାସନ ଗୁଣେ ।
କାହିଁକି ତପ କଲେ ସେ ସ୍ୱପନେ
କୈବଲ୍ୟ ଦାମୀ ଯେଜନ୍ତି ସ୍ୱମନେ ।
ଏକେ ଛଇଲ ଫୁଲବନୋଦଅ
ଫୁଲ ବେଶରେ ଫୁଲୁ ଥାଇ ହୁଅ ।
ଫୁରୁଣାରେ ଲୋକେ ନେତ ଭ୍ରମର
ପାଇ ଲୋଭେ ଚୁମ୍ବି ନୋହେ ଅନ୍ତର ।
ଫୁଲରେ ଅଛି ବଡ଼ ସହାଗ
ନାନାରୂପେ ଫୁଲେ କରନ୍ତି ଭୋଗ ।୧୯।
ଗର୍ଭକୁ ଆଦ ବେଷ୍ଟିତ ଲମ୍ବିତ
ଚୂଳମାଳରେ ସହଜେ ବଦ୍ଧତ ।
ଫୁଲରେ ଶୃରବନ୍ଧ ଆଭରଣ
ଆବଧ ବନ୍ଧ ଅନ୍ୟୋପ କ୍ଷେପଣ ।
ଫୁଲର ଭାବ ଜାଣନ୍ତି ସେହି
ଫୁଲକୁ ସ୍ନେହେ କରିଅଛନ୍ତି ବହୁ ।
ଫୁଲ କୁଣ୍ଡଳ, ଫୁଲରେ ମୁକୁଟ
ଫୁଲ ଅଙ୍ଗଦ କଙ୍କଣ ପ୍ରକଟ !
ଫୁଲେ ଫୁଲେ ହାର ପଦକ ଶୋହେ
ଫୁଲ ଅଲଙ୍କାର ଜଗତ ମୋହେ । ୨୦ ।
ଫୁଲକୁ ଭୁଲ ନୋହଇଛି କେହି
ଫୁଲ୍ଲାରବିନ୍ଦ ନେତ ଥାନ୍ତି ବହୁ ।
ଫୁଲ ଛତ୍ର ଫୁଲ ପଙ୍ଖା ଚାମର

ଫୁଲ ଗୁନ୍ଥିଆ ଆଇଠ ଫୁଲର ।
ଫୁଲ ବଢବଣ ନୂଏ ଶେଯରେ
ଫୁଲ ବୃଷ୍ଟି ଦେବ କରନ୍ତି ଶିରେ ।
ଫେଡ଼ି ବା କେତେ କହିବ ମୁଁ ତାହା
ଫଘା ମହୂର ନୀଳଗିର ନାହା ।
ଶ୍ରୀ ବଳଭଦ୍ର ଦେବ ହୋଇ ଏହୁ ବେଶ
ବାରୁଣୀ ବାସରେ ଅଛ ଅଠବେଶ । ୨୫ ।
ରଜତ ପର୍ବତ ଅଙ୍ଗ ସୁନ୍ଦର
ସୁମିତ ନେତ୍ର ଅଟେ ମନୋହର ।
ଶିରରେ ଫଣୀମଣି ଯେ ବସନ୍ତେ
ତହିଁ ଉପରେ ଫୁଲଚୂଳ ସାଜେ ।
କଟକ ବାହୁଟି ହାର ପଦକ
କୁଣ୍ଡଳ ଆଦ ଫୁଲରେ ପ୍ରେଢେକ ।
ଶ୍ରୀମୁଖ ବେଢ଼ିଣ ଅଳକାପନ୍ତି
ଅତି ସୁନ୍ଦରରୁ ସୁନ୍ଦର ଦିଶନ୍ତି ।
ଆହା ସେ ଶୋଭା ଅଟେ ଅଲକ୍ଷ୍ୟ
କେ ଅଛନ୍ତି ତାହାକୁ କହିବା ଲକ୍ଷ୍ୟ ।୩୦।
ଏମନ୍ତେ ବେନି ଭାଇ ବେଶ ହୋଇ
ଶ୍ରୀକର୍ପୂରି ଚୂର ଅଧରେ ଦେଇ ।
ଅଲପ ମନ୍ଦ ହସ ହସ ହୋଇ
ଅମୃତ ଦୃଷ୍ଟି ଲୋକଙ୍କୁ ପକାଇ ।
ରତ୍ନପ୍ରେ ତହି ସିଂହାସନ ପରେ
ଲୋକ ପୂଠଆସ୍ତ ରହେ ସମ୍ମୁରେ ।

ବଡ଼ ଶିଙ୍ଗାର ହୁଅନ୍ତେ ଗୋବିନ୍ଦ
ନୃତ୍ୟ କରନ୍ତି ଅପସରୀ ବୃନ୍ଦ ।
ତାଳ ମର୍ଦ୍ଦଳ ଯନ୍ତ୍ରରବା ଧରି
ସୁସ୍ୱରେ ଗୀତ ଗାବନ୍ତି ସୁନ୍ଦରୀ । ୩୯ ।
ନାଗରୀଙ୍କ ଅଭିନବ ବୟସୀ
ନାଗର ମନମୀନଙ୍କୁ ବଡ଼ଶୀ ।
ନୃତ୍ୟ ଗୀତରେ ଅତି କୁଶଳତା
ତାଳମାନ ଗ୍ରହ ଲୟରେ ଜୀତା ।
ଗନ୍ଧର୍ବସତ୍ତ୍ୱା ସମସ୍ତେ ହେ ତହିଁ
ଗନ୍ଧର୍ବଙ୍କୁ ହେଲେ ପାରନ୍ତି ମୋହି ।
ସୁନ୍ଦରୀ ଜଗତତ୍ରୟମୋହିନୀ
ଜଗମୋହନ ଅନୁଗ୍ରହ ଯେନ ।
ନଉଚ୍ଚ ନଖର୍ବା ନପାତଦୃଶା
ନ ସ୍ଥୂଳା ନ କୃଶା ଅପୂର୍ବାଳସା । ୪୦ ।
ଉଚ୍ଚ କୁଚଭରେ ସନ୍ଧଏ ଭାସି
ନିତମ୍ବବତୀ ଅତି ମନୋହାରୀ ।
ସୁନେତ୍ରା ସୁଭ୍ରୁ ସୁପଦ୍ମମୁଖୀ
ସର୍ବାଙ୍ଗସୁନ୍ଦରୀ ବଙ୍କକଟାକ୍ଷୀ ।
ସୁକେଶୀ ସୁବେଶୀ କେ ମଦାଳସୀ
କେ କନ୍ଦର୍ପକେଳିକଳାଲାଳସୀ ।
ମତ୍ତପିକଭାଷୀ କେ ମନ୍ଦହାସୀ
କେ ସୁଖରାଶି ମନମୋହଫାଶି ।
କାହାକୁ ଦେଖି ନ ଚଳଇ ପାଦ

କେ ଚାହିଁଲେ କାମ କରେ ପ୍ରମାଦ ।।
କେ ହସରେ ବଶ କରଇ ମନ
କେ ସୁଖ ଦଅଇ କହି ବଚନ ।
କେ ନୟନ କୋଣେ ଚାହିଁଲା କ୍ଷଣେ
ବିନ୍ଧାଇ ପକାଇ ମଦନ ବାଣେ ।
କାହାର ଭୂରୁଭଙ୍ଗର ଚଳୁଛି
ଦମ୍ଭବସନ ନାଶନ କରୁଛି
ଏକେତ ପ୍ରମାଦ ମଦନେ ଉଢା
ମୋହ ପାରନ୍ତି ମହା ଉର୍ଦ୍ଧ୍ୱରେଢା ।
ବକ୍ରବାଣୀ କହି ନାସା ଫୁଲାଇ
ହେଲେ ମନକୁ ନଥାନ୍ତି ମନାଇ । ୫୦ ।
ମୋହନୀ ନାନା ବିଳାସ ରଙ୍ଗେ
ମୋହନ୍ତି ମନକୁ ବିବିଧ ରଙ୍ଗେ ।
କେ ବେଣୀ ବନ୍ଧ କେ ଖୋସଣୀ ଜୁଡ଼ା
ଗଳାରେ ଗଭା ପ୍ରଭ ଘରବୁଡ଼ା ।
କାଳିନ୍ଦୀ ଜଳେ ହଂସପନ୍ତି ପ୍ରାଏ
ମୋତି ସୀମନ୍ତି ଅଛି ଶୋଭା ପାଏ ।
ଝଲକଇ ଝିଲିମିଲି ଅଳକା
ଝଣ୍ଟିଛି ଲଗାଇ କାମ ଭେଳକା ।
ଗଣ୍ଡେ ମଣିମୟ କଣ୍ଠେ ଦର୍ପଣ
ନ କରେ କାହା ମନକୁ ତର୍ପଣ । ୫୫ ।
ପଲ୍ଲ ଭ୍ରମସ୍ତି ଝଲକ ଝଲକା
ଚମ୍ପାକଳି ଅଙ୍ଗୁଷ୍ଠିରେ ମୁଦ୍ରିକା ।

ନାସାରେଣ ମୋତିମଣି ବସଣି
ନେତ୍ର ପଡ଼ିଲେ ମନ ନୁହେ ଅଣି ।
କମ୍ବୁ କଣ୍ଠେ କଣ୍ଠଭୂଷଣ ଶୋଭେ
କରେ କଙ୍କଣ ଚୂଡ଼ି ତାଡ଼ ବାହେ ।
ଚିତ୍ର ତିଲକ ଭାଲେ ବିରାଜେ
ବଧୂଲୀ ଅଧରେ ତାମ୍ବୁଲ ସାଜେ ।
ଖଞ୍ଜନଗଞ୍ଜିତ ନୟନେ ଅଞ୍ଜନ
ରଞ୍ଜି କି କରେ ନୟନ ରଞ୍ଜନ । ୬୦ ।
ଗୋଡ଼ରୁ ଘାଘୁଡ଼ି ବଳା କାହାର
ଧ୍ୱନିରେ ଜନ୍ମାଏ କୁସୁମଶର ।
ରଣରଣକ ରଣ ରଥ ପ୍ରାୟେ
ଝୁଲକ ଦଶଇ ସବୁହ ପାୟେ ।
ବିଶେଷେ କେତେ ବା କହିବ ତାହା
ବିବେକ ନ ରହେ ଶୁଣିଲେ ଯାହା ।
ଏକେତ ସେ ଜଗମୋହନ ଘର
ତହିଁ ପୁଣି ଜଗମୋହନ ପୁର ।
ଏଥି ଯେ କରନ୍ତି ଜଗମୋହନ
ଅଉ କଥା ତାଙ୍କୁ କେତେ ଗହନ ।୬୧।
କାହାର ତାର ତାର ତାର କଲ ।
କରେ ଇଙ୍ଗିତ ମାତ୍ରକେ ତରଳ ।
କେ ହାବଭାବ ଅନୁଭାବ ରସେ
ଅନେକ ସୁଖ ଅମୃତ ବରଷେ ।
ନାନାରଙ୍ଗେ ଫୁଲ ସୁବର୍ଣ୍ଣଲତା

ଛନ୍ଦ ପ୍ରାୟେ ନର୍ତ୍ତନ୍ତି ବନିତା ।
କେ ମୁଗ୍ଧା କେ ମଧ୍ୟା ପ୍ରଗଲ୍ଭା ତହିଁ
କଳାକଳାପୀ ତନୁ ଅଛୁ ବହୁ ।
କାହାକୁ ଚଉର ଦଶ ବରଷ
କାହାକୁ ଷୋଳ କେ ଷୋଳ ଜୀରସ ।୨୦
କେ ଅବା ସତର ଭିତରେ ତହିଁ
ତାହା ଅବା କେତେ ବଳିବ କହୁ ।
ଏମନ୍ତ ରାମା ଯେ ନୃତ୍ୟ କରନ୍ତି
ଜଗତ ନାଥ ମନକୁ ହରନ୍ତି ।
ଏକେତ ତାଙ୍କର ମଞ୍ଜିଷ୍ଠା ରାଗ
ଚିରକାଳ ରହେ ହୁଅଇ ବେଗ ।
କୁସୁମ୍ଭ ରାଗ କେହୁ କେହୁ ବୋଲେ
ରହେ ସମସ୍ତ ରାଗ ବସୁଥିଲେ ।
ରଙ୍ଗରେ ନାନାରଙ୍ଗ କରନ୍ତି
ଅନଙ୍ଗେ ଅନଙ୍ଗ ରସ ପୂରାନ୍ତି । ୨୫ ।
ନୃତ୍ୟ ବଢ଼ାଇ ସମସ୍ତେ ହେ ଚଳେ
ହସ ରସରେ ନାନା କୁତୂହଳେ ।
ରଣରଣକ ରଣ ଧରପନ୍ତି
ପ୍ରାୟେ ରଣଭୂମି ସ୍କନ୍ଦେ ମିଳନ୍ତି ।
ଏମନ୍ତେ ବଢ଼ଇ ବଡ଼ ଚିତ୍କାର
ଲୋକେ ଭିତରୁ ହୁଅନ୍ତି ବାହାର ।
ଖଣ୍ଡେ ଖଣ୍ଡେ ଦୂରେ ଯାଇଁ ରହନ୍ତି
ମହା ସୁପକାରେ ଭୋଗ ବହନ୍ତି ।

ମଣୋହି କରନ୍ତି ଦେବାଧି ରାଏ
ବଲ୍ଲଭ ଲାଗି ସେହିଲାଗେଁ ହୁଏ ।୮୦।
ଅହା ସେ ବନ୍ଦାପନା ବିଧାନ
ସମସ୍ତ ଲୋକର ଗତି ନିଧାନ ।
ଅଚମନ ଶେଷେ ବିଡିଆ ଲାଗି
ହୁଅନ୍ତି ପ୍ରଭୁ ମହାସୁଖଭୋଗୀ ।
ଏହି ସମୟରେ ପୁରାଣ ଶୁଣି
ଦେବତାମାନଙ୍କୁ ହୁଏ ମେଲାଣି ।
ନିଦ୍ରାରେ ଅତି ଅବେଶ ହୋଇ
ପହୁଡନ୍ତି ଦିବ୍ୟ ପଲଙ୍କେ ଯାଇଁ ।
ପାଳି ସେବକ ରହନ୍ତି ସେବାରେ
ଦଣ୍ଡିଆସି ଲୋକ ଫି ଦରଜାରେ ।୮୫।
ଏଥିଅନ୍ତରେ ପଡ଼ଇ କବାଟ
ଏମନ୍ତେ ଜଗନ୍ନାଥ ଦେବରାଟ ।
ନୀତି ହି ନୀତି ପ୍ରତି ପାଳନ୍ତି
ମାଳିକ ବୃତ୍ତିରେ ରାଜ୍ୟ ଚାଳନ୍ତି ।
ରଜନୀ ଶେଷେ ପୁଣି ସେହିମତି
ଏମନ୍ତ ହୋଇ ଦେବରାଜ ନୀତି ।
ଏହା ଯେଉଁମାନେ ଭାବନ୍ତି ନିତି
ତାଙ୍କର କାହିଁ ଧର୍ମରାଜ ଭୀତି ।
ଶୁଣ ହେ ସାଧୁ ବିବେକ ବର
ଏ ପ୍ରଭୁଙ୍କ ଭକ୍ତ ସଂସାରୁ ତର ।୯୦।
ବୋଲିବ ଅବା ଦୀନକୃଷ୍ଣ ବାଣୀ

ତାହା କେମନ୍ତେ ଯିବୁ ଆମ୍ଭେ ଶୁଣି ।
ଗୁଣ ମଧ୍ୟେ ଦୋଷ ଥିଲେ ନର୍ଦ୍ଦୋଷ
କଳଙ୍କ ଥିଲେ ଚନ୍ଦ୍ରମା ପୀୟୂଷ ।
ସହଜେ ଦେଖ ଚନ୍ଦନ ପିତା
ବାସନା ଭାବ ଯେନ ନ ଯେନ ତା ।
ଅତହିଁ ଘାତ କଲେହେଁ ସେ ଫଣୀ
ଗ୍ରହଣ ନକ ନ କର ତା ମଣି ।
କୋକିଳ କଳା ହେଲେ ତାହା ବାଣୀ ।
ମଧୁର ଭାବରୁ ଅବଶ୍ୟ ଶୁଣି । ୯୭ ।
ଶାସ୍ତ୍ରକୁ ଜାତ ହୋଇଲେ ମୁକୁତା
ମଣ୍ଡନ ନ କରେ କେଉଁ ଲୋକ ତା ।
ଏ ଯେନ ଏ ଜଗମୋହନ ଗୀତ
ଅଗାଢ ଗାଢ ଲୋକଙ୍କର ହିତ ।
ଶ୍ରବଣେ ଶୁଣି ମନେ ଏହା ଭାବ
ଅନ୍ତେ ପାଇବ ବଇକୁଣ୍ଠେ ଠାବ ।
ତୁମ୍ଭେ ତ ସବୁହି ପ୍ରକାରେ ଧୀର
ଅସାର କଥା ତୁମ୍ଭେ କର ସାର ।
ମେଘ ଯେମନ୍ତ ଲବଣ ଅମୃତ
ଗ୍ରହଣେ କରଇ ଅମୃତ ମତ ।୧୦୦।
ସେହିରୂପେ ସାଧୁ ଲୋକ ଚରିତ
ତାହାଙ୍କୁ ମୋର କୋଟି ଦଣ୍ଡବତ ।
ଏବେହେଁ କହୁଅଛି ମୁଁ ଖଳଙ୍କୁ
ନ ଯିବ କେବେହେଁ ନନା ଗୋଳକୁ ।

ତୁମ୍ଭ ବଚନ ନଶ୍ରୁକା ସମ୍ପ୍ରେ
ହେଲାରେ ଲୋକ ପ୍ରଚଳିଲ ଯାଏ ।
ପୁଣି ଅପୂର୍ବ ଶରଭ୍ଲୁ ଭଜଇ
ଗୁଣବନ୍ତ ନୋହୁ ମର୍ମେ ବାଜଇ ।
ଜୀବନେ ଥିଲେ ନ ଶୁଖଇ ବ୍ରଣ
ଦୁଃଖ ଦେବାରେ ସେ ଅଛ ନିପୁଣ ॥
ଘନକୃଷ୍ଣ ବୋଲେ ଏ ଶର ଦେଜ
ସାଧୁବୃଦ୍ଧି ହୋଇ ସାଧୁଙ୍କୁ ଭଜ ।
ଜଗନ୍ନାଥ ଦେବରାଜଙ୍କ କଥା
ଶ୍ରବଣେ ଶୁଣି ଖଣ୍ଡ ଭବ ବ୍ୟଥା ।
ଏ ଶରୀର ଇନ୍ଦ୍ରଜାଲ ସମାନ
ଦଣ୍ଡକେ ହୋଇଯିବ ଆନ ଆନ ।
ଚନ୍ଦ୍ରକାର ଚନ୍ଦ୍ରପଟ୍ଟ ପରାଏ
ହୋଇଅଛୁ ଏ ଯଉନଙ୍କ ଦେହେ ।
ପାଣି ଫୋଟକା ପ୍ରାଏ ଫାଟିଯିବ
ଭସ୍ମ କୃମି ବିଷ୍ଠା ଅନ୍ତେ ହେବ ।୧୧୦।
ଅନେକ ରୂପେ ଏହା ଯେ ବିପତ୍ତି
ଏଥିକି ଏକା ଜଗନ୍ନାଥ ଗତି ।
ଦେଖ ଦୁସ୍ତର ସଂସାର ସାଗର
ଏହା ତରିବାକୁ ଉପାୟ କର ।
ନାମ ବୋଇତ କର ବେଗେ ସଜ
କର୍ଣ୍ଣଧାର ହେବେ ଦେବାଧିରାଜ ।
ଭକତି ଭାବ ଯେ ସ୍ମରାଉ ଚନ୍ଦ୍ର

ସୁଖେ ତରିବ କିଛି ଭୟ ନାହିଁ ।
ଦୀନକୃଷ୍ଣ ବୋଲେ ନ କର ହେଳା
ଭାବୁଥାଅ ଶେଷ ପଙ୍କଜ ତୋଳା ।
ସବୁଠାରେ ସମହୃଦୟ ହୁଅ
ସନ୍ତୋଷେ ଦୀନଜନେ ଦାନ ଦିଅ ।
କୋମଳ ପ୍ରିୟ ବଚନକୁ କହ
ଜୀବରେ ମାତ୍ର ଦୟା ଥିବ ବହୁ ।

---

# ଚତୁର୍ଥ ଛାନ୍ଦ

ବଟ—ଚୌଟିକ

ଏବେ ଶୁଣ ସାଧୁ ଜନେ ଜଗନ୍ନାଥ- ଦେବନୃପତିଙ୍କ ଚରିତ
ଅଶେଷ କୋଟି ବ୍ରହ୍ମାଣ୍ଡରେ ଯାହାର ଯଶ ଅନେକ ରୂପେ ଖ୍ୟାତ
ବ୍ରହ୍ମ ଲୋକରେ
ବ୍ରହ୍ମ ଭୁବନ ନିକେତନ
ଉପରେ ହୋଇଛି ବିତାନ କମଳ ବ୍ରହ୍ମଜାତ ଯାହା କେତନ । ୧ ।

ଇନ୍ଦ୍ର ଅମରାବତୀରେ ଅପସରୀମାନଙ୍କ ହୃଦ ହାର ହାର
ଅଳକାପତି ଅଳକାପୁରେ ଦ୍ୱାରେ ମୁକୁତା ତୋରଣ ପ୍ରକାର
କ୍ଷୀର ସମୁଦ୍ରେ
ଫେନ ରୂପରେ ପରକାଶ
ବନ କାନନେ ପ୍ରଫୁଲ୍ଲିତ ସୁମନ ସୁନାସୀରର ମୁଖେ ହାସ । ୨ ।

ଏମନ୍ତ କର କେତେ ଭେଦେ ମୁଁ କହିବ ଯଶ କଦମ୍ବ ପରକାଶ
କହିଲେ ଯାହା ସହସ୍ରମୁଖେ ଶେଷ ଶେଷହିଁ ନ କରିବେ ଲେଶ
ଭବ ବିରଞ୍ଚି
ଇନ୍ଦ୍ର ଚନ୍ଦ୍ର ବିବରଣ
ଯାହା କରୁଣା—କଟାକ୍ଷ ମହିମାରୁ ଏମାନଙ୍କର ବଡ଼ପଣ । ୩ ।

ନାଗ ନର ସୁର ଲୋକ ମଧ୍ୟେ କେହି ସମାନ ନାହାନ୍ତି ତାହାଙ୍କୁ
ରୂପ ଗୁଣ ପରାକ୍ରମେ ନିରୁପମ କରଣ ଲକ୍ଷିବା କାହାକୁ
ସେହି ପ୍ରଭୁଙ୍କ
ଚରଣ ରୂପ ଗୁଣ କୀର୍ତ୍ତି
କହି ବସିଲେ ଗଣେଶ ଆଦି ସରସ୍ୱତୀ ହିଁ ରହିବେ ନିବର୍ତ୍ତି । ୪ ।

କସ ତା ବଚନେ କେତେ କହିବ ମା କହିଲେ ନାହିଁ ଶେ ସରିବ
କେବଳ କୃତାର୍ଥ ହୋଇବା ନିମନ୍ତେ ମନରେ ଭାବନା କରିବ
କାମଦେବ ସେ
ଯେଣୁ କର ମୀନ-କେତନ
କମଳା କୋମଳ କର କମଳରେ କରନ୍ତି ସନ୍ତତେ ଯତନ । ୫ ।
ଅର୍ଦ୍ଧଚନ୍ଦ୍ର ଧର ଭାବର ଶଙ୍କର ସରି ଏ ମହାବୁଦ୍ଧିଦାତା
ମହାବୁଦ୍ଧ ଗଣମାନଙ୍କ ଶରଣ ମହାଜନରେ ସୁଶୋଭିତା
ଦିବ୍ୟ ଅଙ୍କୁଶ
ଥିବାରୁ ସହଜେ ଗଣେଶ
ବଜ୍ର ଧରିବାରୁ ବେଭାରେ ବାସବ ବନ୍ଦେ ସମସ୍ତ ସୁମନସ । ୬ ।
ଚକ୍ର ଚିହ୍ନମାନରୁ ଚକ୍ରବର୍ତ୍ତୀ ସେବା କଲେ ସୁଖ ଦିଅନ୍ତି
ଶଙ୍ଖ ପଦ୍ମ ଶୋଭିବାରୁ ସେ ଶଙ୍ଖ ପଦ୍ମନିଧି ପ୍ରାଏ ଦିଶନ୍ତି
ଧ୍ୱଜ କଳଶ
ଅମ୍ବରେ ଯେଉଁ ଶୋଭାବନ
ଏହା ସେହି ମନେ ମଣି ହେ ସୁଜନେ ମହାରଥ ଯାନ ଶୋଭନ ॥
ଧନୁ ଧରିବାରୁ ମହାକ୍ଷତ୍ରିୟ ସେ ଅଭ୍ୟ କରେ ତପୀଜନ
ଗୋଷ୍ପଦ ବାଦରୁ ପରତେ ହୁଅଇ ସୁରଭିମାନଙ୍କର ସ୍ଥାନ
ଊର୍ଦ୍ଧ୍ୱ ରେଖାରୁ
ରେଖା ସେ ମହାପୁରୁଷରେ
ଯବ ତ୍ରିକୋଣ ସ୍ୱସ୍ତିକ ଅଷ୍ଟକୋଣ ବିନ୍ଦୁ ବିରାଜେ ଏ ବାହାରେ ॥
ମୁନି ମାନମ ମାନସ ମାନସରେ ବିକାଶମାନ ନିରନ୍ତରେ
କେ କହିବ ସେ ପାଦପଦ୍ମ ମହିମା ମାନବ ହୋଇଣ ତରେ

ସବୁ ପ୍ରକାରେ
ସବୁର ସେ ସୁଖଦାୟକ
ଯାହା ଅଂଶେ କରି ତ୍ରୈଲୋକ୍ୟରଚନା କରନ୍ତି ଲୋକନାୟକ ।୯।
ଯେଉଁ ପାଦପଦ୍ମ ସେବାରୁ କମଳା ଅଷ୍ଟ ଅଇଶ୍ୱର୍ଯ୍ୟ କାରଣୀ
ଭକ୍ତଜନ ଭବସିନ୍ଧୁ ତରିବାକୁ ଯେଉଁ ପାଦପଦ୍ମ ତରଣୀ
ଯେଉଁ ଚରଣ
ଅଶରଣ ଲୋକ ଶରଣ
ଯାହା ଚିନ୍ତିବାରୁ କୁମ୍ଭୀର ମୁଖରୁ ମୋକ୍ଷ ହେଲା ବର ବାରଣ ।୧୦
ଯେଉଁ ପାଦପଦ୍ମ-ପ୍ରସାଦରେ ପୂର୍ବେ ପାଷାଣ ହୋଇଲା ଅବଳା
ଯେଉଁ ପାଦପଦ୍ମ-ମହିମାରୁ ଧ୍ରୁବ ଧ୍ରୁବଲୋକରେ କଲେ ଲୀଳା
ଯେଉଁ ପୟର
ପରଶେ ବଳୀ ନରପତି
ଭୁକ୍ତି ପ୍ରାପ୍ତେ ମଣି ପତି କରିଦେଲେ ମହାସୁଖ ରାଜ-ସମ୍ପତ୍ତି । ୧୧ ।
ଯେଉଁ ପାଦପଦ୍ମ ଚିନ୍ତାକରି ହୃଦେ ପ୍ରହ୍ଲାଦ କଷ୍ଟୁ ତରିଲେ
ପାରିଜାତକ ପୁଷ୍ପରେ ମଣ୍ଡିହୋଇ ଅମର ପୁରେ ବିହରିଲେ
ଯେଉଁ ପାଦକୁ
ପୂଜାକରି ଧର୍ମ ନନ୍ଦନ
ଧାର୍ମିକ ବିବେକ ପଣରୁ ହୋଇଲେ ଅନେକ ନୃପତି ବନ୍ଦନ । ୧୨ ।
ଏମନ୍ତ ପ୍ରଭୁଙ୍କୁ କି ଉପମା ଦେବି ଯାହା ପାଦର ଏ ମହିମା
ଯେଉଁ ଅଙ୍ଗକୁ କେଉଁ ଲକ୍ଷ କରିବ ଯେ ମହାସୁଖ ଘୋରି ସୀମା
ମହାପ୍ରଭୁ ସେ
ଜଗତ ଜନଙ୍କ ହିତରେ
କରନ୍ତି ବିବିଧ ଯାହା ବିଚିତ୍ରରେ ହେମନ୍ତାଦ ଷଡ଼ଋତୁରେ । ୧୩ ।

ବସ୍ତ୍ର ଓଢ଼ଣି ମକର ଅଭିଷେକ ଦୋଳ ଦମନକ ଚନ୍ଦନ
ସ୍ନାନ-ଗୁଣ୍ଡିଚ୍ଚ ଶୟନ ଅୟନ ପାର୍ଶ୍ୱ ପରିବର୍ତ୍ତେ ସ୍ଥାପନ
କ୍ରମେ କହିବ
ଯେଉଁ ଋତୁରେ ଯେଉଁ ଯାତ
କେବଳ କୃତାର୍ଥ ହୋଇବା ନିମିତ୍ତ ଶୁଣିମ ସ୍ଥିର କରି ଚିତ୍ତ । ୧୪ ।

ମୋହୋ ବୁଦ୍ଧିରେ ମୁଁ କହି ନ ପାରିବ କୁହାଇବେ ସେ ମହାବାହୁ.
ମହିମାସାଗର ମହିମାରେ ପଙ୍ଗୁ ପର୍ବତ ଲଙ୍ଘେ ଚହିଁ ଚହିଁ
ବଡ଼ ଲୋକଙ୍କୁ
ଦିବ୍ୟ ବଚନ ସେ କୁହାନ୍ତି
ଅନ୍ଧଙ୍କୁ ଲୋଚନ ଦାନ ଦେଇକରି କାଲେ କାଲେ କଥା ରୁହାନ୍ତି ।

ଭକ୍ତଭାବେ ଭୋଳା ଶ୍ୱେତ ପଦ୍ମଲୋଳା ବଣିକୂଠ ଦିଃ ନାଗର
ପୂର୍ବେ ପାଷାଣରେ କପିଙ୍କ ଦାଉରେ ବନ୍ଧାଇଲେ ହେଲେ ସାଗର
କଲେ କୀଠଙ୍କୁ
ବକ୍ର ଅଙ୍ଗହି ସେ କରନ୍ତି
ମାଇଲେ ମହାପ୍ରତାପୀ ବଳବନ୍ତ ସୁର ଅସୁରଙ୍କୁ ମାରନ୍ତି । ୧୫ ।

ଏହି ଯେଣ ବଡ଼ ଭରସା ମୋହୋର ନୀଳ-ପର୍ବତସିଂହଠାରେ
ଅଛି ଭୟଙ୍କର ସଂସାର ଜନଙ୍କୁ ଭୟ ନ ଥାଇ ମୋ ମନରେ
ଅଜ୍ଞାନ ଲମ୍ଭ
ବିପୁଳ ଅଟେ ବେଳ ବାହା
ଊର୍ଦ୍ଧ୍ୱକର ଚହିଁ ଚହିଁ ହେଉଥିଲେ ହୃଦୟ ହୋଉଥାଇ ଯାହା ॥

ବଚନରେ ତାହା କେତେହେଁ କହିବ ଅହା ସେ ଶ୍ରୀମୁଖ ଚଉସି
କୋଟି କୋଟି ଚନ୍ଦ୍ରଉଦୟା ଉତ୍ପ୍ରଭା ଦେଉ ଯେ ଥାଇ ହୃଦ କରି

ଚରୁ ତିଳକ
ଅବୋଳ ଚନ୍ଦ୍ର ସ୍ୱର୍ଣ୍ଣରେଖା
ଇନ୍ଦ୍ର ପଦତ୍ ମଣାଇ ଯେ ଦେଖାଇ ଦିଅଇ ମହା ଦିବ୍ୟଶିଖା । ୧୮ ।

ମକର ମୁଖ ମଣିମୟ କୁଣ୍ଡଳ ଗଣ୍ଡମଣ୍ଡଳେ ଯେ ଝଟକେ
ଦର୍ଶନସୁଖ କଦମ୍ବରେ କଦମ୍ବଫୁଲ ପ୍ରାୟେ ଅଙ୍ଗ ପୁଲକେ
ଚକା ନୟନେ
ବିସ୍ତାର ସନ୍ନେହେ ଚାହିଁବା
ଅହାସେ ବିପୁଳ ହୃଦେ ଫୁଲମାଳ ପନ୍ତି ପନ୍ତି ହୋଇ ରହିବା ।୧୯।

ମୁହିଁ ଏହି ଭାବନା କରୁଥାଇ ସିନା ସବୁ ଦିବସ ନିରନ୍ତରେ
ଅନ୍ୟକ ଅହଲ୍ୟା କରିବାକୁ ଚିନ୍ତା ନ ଥାଇ ମୋ ଅନ୍ତର୍ଗତରେ
ଅହେ ସ୍ୱଜନେ
ଏହି ପ୍ରଭୁଙ୍କ ସେବା କର
ପତଙ୍ଗ ପ୍ରାୟେ ସୁରଙ୍ଗ ଦେଖି ମାୟା ଅନଳରେ ପଡ଼ି ନ ମର ।୨୦।

ଝଲ ବଲ ମୂର୍ଖ ଲୋକଙ୍କୁ ଏ ସୁଖ-ଦାୟକ ନୁହଇ କେବେହେଁ
ଚନ୍ଦ୍ର ଉଦେ ହେଲେ ଅକର୍ମଶୀଳା ଯେ ଲେଖେ ହେଁ ଦୁଃଖଭୂତ ନୋହେ
ବୋଧ ନୁହନ୍ତି
କି ହେବ ତାହାଙ୍କୁ କହିଲେ
ମାତ୍ର ମାର୍ଜାର ସର୍ପ ଫେଣା ନ ଧରେ ଯେତେ ପଦ୍ମତୋଳା ଗାଇଲେ ।୨୧

ଏକା ଜଗନ୍ନାଥ ବାହାରେ କୃତାର୍ଥ କରିବାକୁ ନାହିଁ ଫସାରେ
ଏହୁ ଯେକ ଧାନ କୃଷ୍ଣ ତାଙ୍କୁ ମନ ବଚନ କର୍ତ୍ତବ୍ୟରେ ଧରେ
ମହାପ୍ରଭୁ ହେ
ଏହି କରୁଣା ମୋତେ କର
ଜଗମୋହନ ଗୀତ ନିରନ୍ତର ମୋ କଣ୍ଠରେ ହେଉଥାଉ ହାର ॥

---

# ପଞ୍ଚମ ଛାନ୍ଦ

( କେଦାର ଛନ୍ଦେ ଗୀତ୍ରେ । )

ଆହେ ସାଧୁଜନମାନେ    ଏବେ ଶୁଣ ଏକମନେ
ଓଢ଼ଣ ମକର-ଅଭିଷେକ ଯାତ୍ରା ହୁଅଇ ଯେଉଁ ବିଧାନେ । ୧ ।

ହେମ ଶିଶିର ସମୟେ    ଏଛନ ଉତ୍ସବ ହୁଏ
କି କହିବି ମହାମହିମା ଯାହା ସେ କଲେ ପ୍ରଥମ ଉଦୟେ ॥

ଅତି ସୁନ୍ଦର ସୁବାସ    ମହା ଲକ୍ଷ୍ମୀଙ୍କ ନିବାସ
ବ୍ରହ୍ମାଣ୍ଡ କରତା ବ୍ରହ୍ମାଙ୍କ ଆସନ ପଦ୍ମ କରଇ ବିକାଶ । ୩ ।

ଧର୍ମ୍ମ କର୍ମ୍ମ ଅବକାଶ    ବିଷୟ ବିଳାସ ବାସ
ଏମନ୍ତ ଦିବସକୁ ଲଘୁ କରଇ ଥାଉଁ ଥାଉଁ ପ୍ରଭୁ ପାଶ । ୪ ।

ଚକ୍ରବାକ ସୁଖଦାତା    ଜନ ଆନନ୍ଦ କରତା
ମହାପ୍ରତାପୀ ସୂର୍ଯ୍ୟ ତେଜ ଖଣ୍ଡର ଏମନ୍ତହିଁ ସେ ଯୋଗ୍ୟତା । ୫ ।

ଥାଉ ଆଉ କଥା ଦୂରେ    ଅଗ୍ନି ଯେଉଁ ଶୀତ ଡରେ
ପଳାଇ ଯାଇଁ ପଟିଲେ ପୁରେ ପୁରେ ନରମାନଙ୍କ ଉଦରେ । ୬ ।

ଏ ଯେନ ଅନେକ ଭକ୍ଷେ    ଦେଖିଲେ ତାଙ୍କୁ ପ୍ରତ୍ୟକ୍ଷେ
ସେବା କଲେ ଅତି ସନମାନ କରି ମହତ ଅତିଥି ଲକ୍ଷେ । ୭ ।

ପ୍ରବଳ ଶୀତ ଏକାଏ    କଲା ସମସ୍ତଙ୍କୁ ଜୟେ
ଉତ୍ତମ ଲୋକଙ୍କୁ ନତ କରାଇଲା ଗୁଣ ଦେଲା ଧନୁ ପ୍ରାୟେ । ୮ ।

ଶୀତ ଭୟେ ଥରହର    କମ୍ପିଲେ ଅନେକ ନର
ଦେହ ଠାଙ୍କୋରାଇ ଢଙ୍କର ପରାୟେ ଯୋଡ଼ିଲେ କେ ବେନି କର ।

ଶୀତ ନାଶିବା ଉପାୟେ କଲେ ଲୋକ ଠାଏ ଠାଏ
ତୁଳ କଉପ ନାନା ବସ୍ତ୍ରମାନଙ୍କେ ପରିଧାନ କଲେ କାୟେ । ୧୦ ।

ଦଧି ଦୁଧ ଘୃତମାନ କଲେ ଅନେକ ଭୋଜନ
ବଳବନ୍ତ ହେବା ଶୀତକୁ ନାଶିବା ମନେ ବିଗ୍ରହ ଏମାନ । ୧୧ ।

ମଞ୍ଜିଷ୍ଠାରଙ୍ଗ ବସନ କଲେ କେହୁ ପରିଧାନ
ଶୀତ ପବନ ବାଣ ନିବାରଣେ ସେ ଅଙ୍ଗ ରକ୍ଷ ସୈନ୍ୟମାନ । ୧୨ ।

ସବୁଅଡ଼େ ଶୀତ ଗୋଳ ଲୋଡ଼େ କେ ଅଶୀତ ସ୍ଥଳ
ସନ୍ଧ୍ୟା ହେଲା ବେଳୁ ସଦନେ ପଶି କେ ଚଳେ ଗୋବିନ୍ଦ ଗୋପାଳ ॥

ଶୀତ ଅସେ ଏହି ବେଗେ ଏମନ୍ତ ବୋଲି କେ ବେଗେ
ବାତାୟନମାନ ନିରୋଧ କରନ୍ତି ବିଭାବରୀ ସୁଖ ଲାଗେ । ୧୪ ।

ଶୀତକର ବୋଲି ଡରେ ଚନ୍ଦ୍ର ଚନ୍ଦନ ଚନ୍ଦ୍ରରେ
ଆଦର ନ କଲେ ବଡ଼ ଲୋକମାନେ ଭୂଷନ୍ତି ବସାଇ ପୁରେ । ୧୫

ଅରକ୍ଷିତ ଜନମାନେ ଆଶା ନିବେଶି ତପନେ
ଅଗ୍ନି ଦେବତାଙ୍କୁ ଅଶ୍ରେ କରି ନିଶି ଦିବସ ବଞ୍ଚନ୍ତି ଧ୍ୟାନେ । ୧୬ ।

କେ ବୋଲଇ କାଲି ଜାଡ଼ ଭାଙ୍ଗି ପକାଇଲା ହାଡ଼
କେଉଁ ଦିନ ମହାପ୍ରଭୁ ଏ କରିବେ ଘୋର କଷ୍ଟୁ ଜୀବ ଛାଡ଼ ।୧୭।

ଶୀତ ଅଛି ବୋଲି ଜଳେ କେହି ନ ପଶେ ବିକଳେ
ଜଗନ୍ନାଥ ବୋଲି କେ ପଶେ ପେଲି କେ ଚପଳ କରେ ଅନଳେ ॥

କେ ଅବା ଶୀତ ଅକୁଳେ ପଶିଲେ ଯୁବତୀ କୋଳେ
ଅତି ସୁଖରେ ମୁଖେ ଦେଇ ତାମ୍ବୂଳ ପୂରିତ-ମୁଖମଣ୍ଡଳେ । ୧୯ ।

ଯାହାର ନାହିଁ ଯୁବତୀ      ପଡ଼ିଲା ତାକୁ ବିପତ୍ତି
କୋଟିଏ ଯମ ସମ କରି ଗଣିଲା ମହାଘୋର ଶୀତ ଋତୁ । ୧୦ ।

ଥିଲେ ସୁନ୍ଦରୀ ଯା' କତି      ନ ଗଣନ୍ତି ତା ଶୀତ ଭୀତି
କମ୍ପି ରୋମାଞ୍ଚ ସ୍ୱରଭଙ୍ଗ ବଢ଼ିଲା ଶାନ୍ତି ହୋଇଲା ସୁରତ । ୧୧ ।

ଉତ୍ତମ ଯେଉଁ ଯୁବତୀ      ରତିପତି ମଦେ ମାତି
କାନ୍ତ ମନ ଜାଣି ରସିକ ସେହାଣୀ କଲା ବିପରୀତ ରତି । ୧୨ ।

ଶୀତ ଚରତ କହିଲେ      ସରବ ନାହିଁ ଏ ଭଲେ
ଯେଉଁ ଶୀତ ଲାଗି ମିତ୍ର ଚନ୍ଦ୍ରଭାନୁ ଦିଗ ଲାଗି ବେଗେ ହେଲେ ।୧୩।

ଏମନ୍ତ ହିମ ସମୟେ      ଜଗନ୍ନାଥ ଦେବାଶ୍ରୟେ
ଦିବ୍ୟ ଯୋଡ଼ାମାନ ନିଯୋଡ଼ି କରି ସେ ଶ୍ରୀଅଙ୍ଗରେ ଲାଗି ହୁଏ ॥

ଶ୍ରୀ କର୍ପୂର ଗନ୍ଧାଉଛି      ଶ୍ରୀଅଙ୍ଗେ ଫେଣ୍ଟା ଗଉଁଛି
ଶୀତ ପୀତ ନୀଳ ଲୋହିତ ବସନ ଶ୍ରୀମୁଖକୁ ଥାଇ ଗଛି । ୧୪ ।

ଅନେକ ମରୁଅ କୁନ୍ଦ      କୁସୁମରେ ମାଳ ବୃନ୍ଦ
ମଣ୍ଡିହୋଇ ମହାପ୍ରଭୁଙ୍କୁ ଦିଅନ୍ତି ପରମାନନ୍ଦ ଗୋବିନ୍ଦ । ୧୬ ।

ଦିନେ ଦିନେ ଦିବ୍ୟବେଶ      ହୁଅନ୍ତି ଯେ ପୀତବାସ
ଦାସର ଦାସ-ଦାସ ହୋଇ ଥିବାକୁ ଦେବତାମାନଙ୍କ ଆଶ । ୧୭ ।

ମକରାକୃତି କୁଣ୍ଡଳ      ମଣ୍ଡିଥିଲେ ଗଣ୍ଡସ୍ଥଳ
ମୁଖମଣ୍ଡଳ କି ଶୋଭା ଦିଶୁଥାଇ ନେତ୍ରକୁ ଦେଇ ସୁଫଳ । ୧୮ ।

ଏମନ୍ତେ କେତେ ଦିବସ      ଶେଷେ ଶିଶିର ପ୍ରବେଶ
ହୁଏନିବ ମେଘ ମହା ପ୍ରବଳରେ ଘୋଟନ୍ତି ଦଶ ଆକାଶ । ୧୯ ।

ଶୀତକାଳର ସେ ବଳ  ବେଢ଼ଇ ସୂର୍ଯ୍ୟ-ମଣ୍ଡଳ
ଦିନକର କର କୂଟବାଲେ ତାଙ୍କୁ ଦଣ୍ଡକେ କରେ ନିର୍ମଳ । ୩୦ ।

ଥଇ ଥାଇ ଜାଡ଼ ପଡ଼େ  ସୂର୍ଯ୍ୟଦେବ ତାଙ୍କୁ ଲୋଡ଼େ
ଜବାଇ ଲାଗି ହୋଇ ଜଗମୋହନ ସାଉଁଟ ବେଶ ନ ଛଡ଼େ ।୩୧।

ଶିରେ ଶିରସ୍ତାଣ ଶୋହେ  ସୁରନର ମନ ମୋହେ
ସକଳ ବ୍ରହ୍ମାଣ୍ଡନାଥ କମ୍ବଳ ଅଟରଣି ଶ୍ରୀକରରେ ବହେ । ୩୨ ।

ତହୁଁ କଚ୍ଛଦନ ଶେଷ  ପୂର୍ଣ୍ଣିମା ଆସି ପ୍ରବେଶ
ଅଭିଷେକ ପାଇଁ ସୁବର୍ଣ୍ଣ କଳଶେ ଜଳ ହୋଏ ଅଧିବାସ । ୩୩ ।

କମ୍ବୁକଣ୍ଠ ନାୟକ  ଅଶେଷ ସୁଖ ଦାୟକ
ପବିତ୍ର ଜଳେ ଅଭିଷେକ ବଢ଼ଇ ତୋଷନ୍ତି ସମସ୍ତ ଲୋକ । ୩୪ ।

ଦୟାନିଧି ସୁଖରାଶି  ଦିବ୍ୟ ବେଶ ହୋଇ ବସି
ଏକେ ମନ୍ଦାକିଶୋଭା ସେ ପ୍ରାଣ ବଲ୍ଲଭ କମଳା ପାଟମହିଷୀ । ୩୫ ।

ଚତୁର୍ବିଧ ବାଦ୍ୟ ବାଜେ  ପାଶେ ଦଣ୍ଡଛତ୍ର ରାଜେ
କାଶ୍ମୀର ତଣ୍ଡୁଳ ଦୂର୍ବାଦଳ ଦେଇ ବନ୍ଦାପନା କଲେ ଦ୍ୱିଜେ ।୩୬।

ସେ ଦରଶନ ଯାହାର  ହୋଇଲା ଧନ୍ୟ ତାହାର
ଆଉବେଳେ ସେ ଜନମଠାରୁ ଘୋର କଟିବ ନାହିଁ ଆନ୍ଧାର ।୩୭।

ନବାଙ୍କ ଯାତ୍ରାଭିଆଣ  ଏହି ସମୟରେ ଜାଣ
ନବାନ୍ନ ଲାଗି ଏ ସବୁ ନବତନ ହୁଅଇ ବିଧି-ପ୍ରମାଣ । ୩୮ ।

ଦେଖି ବଶ ହୁଏ ନେତ୍ର  ସୁନ୍ଦର ଧବଳ ଛତ୍ର
କଲାକନାଣ୍ଟି ଝିଲ୍ଲିଲ ମାଲ ମାଳ ଜଗନ୍ନାଥ ଭୋଗପାତ୍ର । ୩୯ ।

ଅନେକ ଭୋଗସମ୍ଭାର କହିଲେ ହେବ ଅପାର
ସ୍ୱଭାବେ ପ୍ରବେଶ ହୋଇଛି ମନ୍ଦର ଚଉଦିଗେ ନାହିଁ ପାର । ୪୦ ।

ସୁଧାଲେପ ସବୁଠାରେ , ବିଚିତ୍ର ତୋରଣ ଦ୍ୱାରେ
କରୁଣା-କର ଉତ୍ସବରେ ଫୁରୁଣା ନୋହଇ କେତେ ପ୍ରକାରେ ॥

ନାନାବର୍ଣ୍ଣେ ଫୁଲମାଳ ବଡ଼ ବଡ଼ ଉଚ୍ଚ ଚୂଳ
କେତେ ରୂପେ କେତେ ଶୋଭାରୁ ଅସର ତୋଷଇ ନେତ୍ର ଯୁଗଳ

ଧୂପ ସାର ଜଗଦୀଶ ହୁଅନ୍ତି ମହା ପ୍ରବେଶ
ସେହି ପ୍ରଭୁଙ୍କୁ ସେ ମାଳ ଚୂଳ ଶୋଭେ ଜୟ ନୀଳାଦ୍ରିନିବାସ ।୪୩।

ମଣୋହି ବଢ଼ାଇ ଦାର ବନ୍ଦାପନା ଲାଗି ସାର
ସୁର ନର ମୁନି ବୃନ୍ଦ ଘେନି ସିଂହାସନ ପରିକ୍ରମା କରୁ । ୪୪ ।

ବାଜଇ ଗୀତ ଢମକ, ଶଙ୍ଖ ମହୁରୀ ଅନେକ
ଘଣ୍ଟା ମର୍ଦ୍ଦଳ ବେଣୁ ବୀଣା କାହାଳି ଶୁଭେ ଜୟ ଜୟ ଡାକ । ୪୫ ।

ଶ୍ୱେତାତପତ୍ର ଧରିଣ ଚତୁର୍ବର୍ଗ କୃତ ଦେଇ
ହଳେ ହଳେ ମଣିମୟ ବିମାନରେ ଲୋକଙ୍କ ବାଞ୍ଛା ପୂରାଇ । ୪୬ ।

ଅଥା ସ୍ୱର୍ଗେ ରହି ସୁରେ ଦର୍ଶନ କରନ୍ତି ଧୀରେ
ଜୟ ଜୟ ସ୍ତୁତି କରି ସୁର ପୁଷ୍ପ ବରଷନ୍ତି ମସ୍ତକରେ । ୪୭ ।

ଅପସରା ବୃନ୍ଦ ମିଳି ଝୁଲି ଅଙ୍ଗକୁ ସାମଳି
ଗୀତ ଗାଇ ନୃତ୍ୟ କରନ୍ତି ଛନ୍ଦନ୍ତି ଦେଖାଇ ହସ୍ତକାବଳି । ୪୮ ।

ପ୍ରସାଦକୁ ପରିକର୍ମୀ କରି ସେ ବ୍ରତିକର୍ମୀ
ରତ୍ନ ସିଂହାସନେ ହଳେ ହଳେ ହର ମହାପାପୀ ପାପସୀମା । ୪୯ ।

ନବାଙ୍କ ଦ୍ୱିତୀୟ ଦିନ ମକର ଯାତ୍ରା ଉଆଣ
ଭୋଗ ଶେଷ ପଛେ ବୁଲଇ ମକର ଚଣ୍ଡୁଲାଦ ଦଧିମାନ । ୫୦ ।

ପୂର୍ଣ୍ଣିମା ଚନ୍ଦ୍ର ଅଭୁଛ ଶକଲ ମାନଙ୍କ ଜ୍ୟୋତ
ଖଣ୍ଡ ଖଣ୍ଡ ମୁଣ୍ଡା ନର୍ମଳ ନବାତ ବୋଗ୍ ତୋଗ୍ ସେହିମତ । ୫୧ ।

ନାନାବର୍ଣ୍ଣି ପିଠା ଯେତେ ବଚନେ କହିବ କେତେ
ମହା ସୂପକାର·ମାନେ ତା ବାଢ଼ନ୍ତି ମହାପ୍ରଭୁଙ୍କ ଅଗ୍ରତେ । ୫୨ ।

ଭୋଗ ସାର ଦେବରାଏ ବନ୍ଦାପନା ଲାଗି ହୁଏ
ସୁର ନର ମିଶି ଜୟ ଜୟ ଭାଷି ଆନନ୍ଦ ପୁଲକ କାୟେ । ୫୩ ।

ଦୀନକୃଷ୍ଣ ଏହି କାଲେ ପଶି ଲୋକଙ୍କ ଗହଳେ
ଜଗନ୍ନାଥ ଦେବରାଜଙ୍କ ଦର୍ଶନ କଲା ପୂର୍ବ ଭାଗ୍ୟବଲେ । ୫୪ ।

ମହା ଆନନ୍ଦ ହୋଇଲା ମହା ପ୍ରସାଦ ଖାଇଲା
ଅସାର ସଂସାର ଶୋକ ଯେତେ ଥିଲା ଦୂରକରି ତା' ଥୋଇଲା ।୫୫।

ଜୟ ଜୟ ଜଗନ୍ନାଥ ଜୟ ଶଙ୍ଖଚକ୍ର ହାଥ
ଏହି ଆଜ୍ଞା ମୋତେ ସର୍ବଦିନେ ଥିବ ଏ ମୋହର ମନୋରଥ ।୫୬।

ତୁମ୍ଭ ଶ୍ରୀମୁଖ ଚାହିଁବି ତୁମ୍ଭ ଚରିତ ଗାଇବି
ଏହି ଆଜ୍ଞା ହେବ ଜନ୍ମ ଜନ୍ମାନ୍ତରେ ଏହି ସେବାରେ ରହିବି । ୫୭ ।



# ଷଷ୍ଠ ଛାନ୍ଦ

( ରାଗ ମୋହନ । ବସନ୍ତ ଋତୁ ଦୋଳଯାତ୍ରା ବର୍ଣ୍ଣନା )

ବସନ୍ତରାଗେ ରୂପକ ତାଳେ ଗୀୟତେ:—

ଅହେ ଜନମାନେ ଏବେ ଏକମନେ ଶୁଣ ଦୋଳ ଯାତ୍ରା କଥା
ଅରୁଣ ଉଦୟେ ଅନ୍ଧକାର ପ୍ରାଏ ନାଶ ଯାଉ ଭବ-ବ୍ୟଥା
ହେ ଜନେ ।
ଯାହା ଦର୍ଶନ କରିବାକୁ ଆଗନ୍ତୁଁ ଆସେ ବସନ୍ତ ନୃପତି
ଅତି ତୋଷରେ ଧରାଇ ମସ୍ତକରେ ନାଗେଶ୍ୱର ଫୁଲ ଛତି
ହେ ଜନେ । ୧ ।

ପ୍ରଫୁଲ୍ଲ ରସାଳ ବକୁଳ ଚାମର ଚୂର ପାରୁଶରେ ପଡ଼େ
ନାନାବର୍ଣ୍ଣେ ନବ-ପଲ୍ଲବ ପତାକା ପନ୍ତ ପନ୍ତ ହୋଇ ଉଡ଼େ
ହେ ଜନେ ।
କିଂଶୁକ କୁସୁମ ପାଠ କରବାଲ ରଙ୍ଗ କୋଷରେ ଛୁଆଇଁ
ଅଛନ୍ତି ବଣାପ କରୁ ଦ୍ୱିଜବର ଗୋଡ଼ରେ ଥାଇ ତା ଦେଇ
ହେ ଜନେ । ୨ ।

କେଳି କଦମ୍ବେ କେଳି କରୁ ଭ୍ରମର କଦମ୍ବ ଝଙ୍କାର କରେ
ବାଛା ବଜେ କାଁଳେ ପରମ ମଙ୍ଗଳ ଶଙ୍ଖ ଶବଦହିଁ ପୂରେ
ହେ ଜନେ ।
କେତକୀ କୁନ୍ତ କରେ ଧରି ବାହାର ଚଢ଼ି ପବନ-ତୁରଙ୍ଗ
ଫୁଲ୍ଲ ଧନୁଶର ଧରୁ କାମ ବୀର ସାଖା ଥାଇ ତାହା ସଙ୍ଗ
ହେ ଜନେ । ୩ ।

ପ୍ରବଳ କୋକିଳ—ନାଦ ବର ବାଦ୍ୟ ଶୁଭଇ ଅତି ଉଚ୍ଚରେ
ମଲ୍ଲୀ ମାଧବୀ ଛୁଟାଅନ୍ତି ସୁବାସ ଧୂପ ପୂରେ ଦିଗନ୍ତରେ
ହେ ଜନେ ।

ପ୍ରେମମତ୍ତ ହୋଇ ବସନ୍ତ ଋତୁବର ରହଇ ମଞ୍ଜୁମଣ୍ଡଳେ
ସ୍ବଦେଶ ରସିକ ସ୍ବଦେଶ ଉତ୍ସବ ଦେଖିବାକୁ କୁତୂହଳେ
ହେ ଜନେ । ୪ ।

ମନମଥ ମନ- ମଥ ବେଶ ହୋଇ ଜଗନ୍ନାଥ ଦେବସ୍ବାଏ
ଅତି ଅମୂଲ୍ୟ ମଣିମୟ ବିମାନ ଆରୋହି କଲେ ବିଜୟେ
ହେ ଜନେ ।

ବାଜଇ ଘଣ୍ଟ ମର୍ଦ୍ଦଳ ଏକସର ଦୋସର କାହାଳ ସଙ୍ଗେ
ବାରବାଣୀ ବୃନ୍ଦ ବାହାର ଆଗରେ ବିଚିତ୍ର ସୁବେଶ ଅଙ୍ଗେ
ହେ ଜନେ । ୫ ।

ରସିକ ନାଗର ଚରଣରେ ନୃତ୍ୟ କରିବାକୁ ସେହି ପାତ୍ର
ଅବଲୋକନ ମାତ୍ରକେ କାମଶରେ ରହିବ କାହାର ଗାତ୍ର
ହେ ଜନେ ।

ଯେତେ ବେଳେ ଯାଏ ପଡ଼ି ନ ଥାଇ ସେ ଭ୍ରୂଭଙ୍ଗୀ କଟାକ୍ଷମାଳା
ତେତେବେଳ ଯାଏ ନ ଜାଣନ୍ତି ଯୋଗୀ ମକର-କେତନ ମାଳା
ହେ ଜନେ । ୬ ।

ନାସିକା ଫୁଲଇ ବକ୍ରଭୂତ ହୋଇ ମଧୁର ମଧୁ ହାସତ
ମହା ବିବେକ—ଧଇର୍ଯ୍ୟ-ମୂର୍ଚ୍ଛାଯାକ କରନ୍ତି ସେ କରଗତ
ହେ ଜନେ !

ଏ ବସନ୍ତ କାଳେ ପ୍ରମତ୍ତ କୋକିଳ   ବଚନ କହୁଥା ତେଣେ
ନ ଶୁଣିଥିବା ଯାଏଁ ଯାହା ଶ୍ରବଣେ   ସୁରମୁନି ଜଣେ ଜଣେ
ହେ ଜନେ । ୭ ।

ଯାହା ନୟନ   ପଞ୍ଚବାଣୁ ମଦନ   ଅବଧାରି ରହିଥାଇ
ମହା ପ୍ରତାପୀ   ମହାରାଜା ଆଜ୍ଞାକୁ   କିଙ୍କର ପରାଏ ହୋଇ
ହେ ଜନେ ।

ବ୍ରହ୍ମାଦି ଶଙ୍କର   ଦେବଙ୍କୁ ହେଲେହେଁ ଉପ୍ରୋଧ ନ କରେ ଯତଣେ
ସେହି ପ୍ରାଭବକୁ ଭସ୍ମେ କରି ମହା   ଯୋଗୀନ୍ଦ୍ର ପଶିଲେ ବଣେ
ହେ ଜନେ । ୮ ।

ମହାଯୋଗୀବର   ଗିରିଜାବଲ୍ଲଭ ନେତ୍ର   ଅନଳ ପତଙ୍ଗ
ତାଙ୍କ ପ୍ରସାଦେ   ଜଗତ ଜୟ କରେ   ଧରି ନ ଥିଲେ ସେ ଅଙ୍ଗ
ହେ ଜନେ ।

ଯେଉଁ ନାଗରଙ୍କ ଅଙ୍ଗହିଁ ଅନଙ୍ଗ   ପ୍ରହରଣ କରି ମାରେ
ଭୋଳା ହୋଇ କିପାଁ ଅବଳା ତାହାଙ୍କୁ   ବୋଇଲ ଅବିବେକରେ
ହେ ଜନେ । ୯ ।

ମଦନ ରଙ୍ଗରେ   ଅଛି ହରଷରେ   ପକାଉଥିଲେ ସେ ଦୃଷ୍ଟି
ନୀଳକମଳ ବୃଷ୍ଟି କଲା ପରାଏ   ଶୋଭା ପାଉଥାଇ ସୃଷ୍ଟି
ହେ ଜନେ ।

ଉଚ୍ଚ କୁଚ ପୃଥୁ   ନିତମ୍ବ ଭରରେ   କରନ୍ତେ ମନ୍ଥର ଗତି
ମତ୍ତରାଜହଂସ   ଡାକିଲା ପରାଏ   ହଂସକ ଧ୍ୱନି କରନ୍ତି
ହେ ଜନେ । ୧୦ ।

ଏମନ୍ତ ବାର     ସୁନ୍ଦରୀମାନେ ନୃତ୍ୟ   କରନ୍ତି ବିବିଧ ରଙ୍ଗେ
ବଡ଼ଦାଣ୍ଡେ ବଳେ ଗହଳ ଲଗାଇ     ସୁର ନର ବୃନ୍ଦ ସଙ୍ଗେ
ହେ ଜନେ ।

ଫରୁ ଉଡ଼ ଧ୍ୱଜ   ଗଗନ ପୂରି ଯେ     ଦିଶଇ ମହାସୁନ୍ଦର
ଅନାଇ ଭକତ   ଜନମାନଙ୍କର     ପୁଲକ ହୁଏ ଶରୀର
ହେ ଜନେ । ୧୧ ।

ଋଚେଶୀ ଯାତ୍ରା   ସାରି ଜଗମୋହନ     ଅଗ୍ନି ଉତ୍ସବ ବସଇ
ପାଠ ପଢନ୍ତି     ଗୃମର ଚନ୍ଦ୍ରାତପେ     ଦୋଳମଣ୍ଡପ ମଣ୍ଡଇ
ହେ ଜନେ !

କି କହିବ ସେ   ମଣ୍ଡଣି ଆଡ଼ମ୍ବର   ଦେଖିଲେ ନୋହେ ଉପେକ୍ଷି
ଚିତ୍ର ପ୍ରତିମା ପରି ଦେହ ରହଇ     ଅପଲକ ହୁଏ ଆଖି
ହେ ଜନେ । ୧୨ ।

କଠର ସ୍ତମ୍ଭ—   ମାନଙ୍କ ମସ୍ତକରେ   ଯାତ କୁମ୍ଭ କୁମ୍ଭ ଶୋହେ
ସୁବର୍ଣ୍ଣ ଶଲାକାବଳୀରେ ପତାକା   ବଳୀ କି ଶୋଭା ନ ବହେ
ହେ ଜନେ ।

ଚୂର ପାରୁଶରେ  ବିବିଧ ବର୍ଣ୍ଣରେ     ଫୁଲମାଳମାନ ଲମ୍ବେ
ମଧୁର ଝଙ୍କାର   କରି ମଧୁକର     ପୁଷ୍ପ ମଣ୍ଡଳୀରେ ଭ୍ରମେ
ହେ ଜନେ । ୧୩ ।

ନାନା ମଣିମାନ-  ଙ୍କରେ ମନୋହର   ମଧ୍ୟେ ଚନ୍ଦ୍ର ସୂର୍ଯ୍ୟ ରହେ
ସେଥିର ପାଠରେ ସୁବର୍ଣ୍ଣ ଦର୍ପଣ     ପନ୍ତି ପନ୍ତି ହୋଇ ଶୋହେ
ହେ ଜନେ ।

ଇନ୍ଦ୍ର ଧନୁକୁ   ସମାନ କରନ୍ତ୍ୟାଇଁ   ସେ ଶୃଙ୍ଗୀ ତହିଁ ନାହିଁ
କରୁଣାକରର   ବିଜୟେ ତୋରଣା   ତହିଁକି ଉପମା କାହିଁ
ହେ ଜନେ । ୧୪ ।

ଫୁଲ ଛଡ଼ି ଫୁଲ   ବିତାନ ଅନାଇ ପୁଲକ ଉଠଇ ହିଅ
ଫୁଟିଲେ ଫୁଲେ ସବୁ ଉଆଣ ଯେଣୁ ସେ   ପ୍ରଭୁ ଫୁଲ ବିନୋଦିଆ
ହେ ଜନେ ।

ଫୁଲ ପଙ୍ଖା ଫୁଲ   ଅଳକ ଭ୍ରମର   ଫୁରୁଣାରେ ଧରି ନଚେର
ବେନି ପାଶରେ   ମନ୍ଦ ମନ୍ଦ ଚାଳିବା   କି କହିବି ବଚନରେ
ହେ ଜନେ । ୧୫ ।

କେତେ କହିବି   ସେ ବାହାର ମଣ୍ଡଣି   ବଚନ ମୋହୋର କେତେ
ସୁବର୍ଣ୍ଣ ବର୍ଣ୍ଣ   ବାରଣ ବୃଷ   ପରମେଷ୍ଠୀ ପକ୍ଷୀ ପୁଣ ଯେତେ
ହେ ଜନେ ।

ପଦେ ପଦେ ବନେ ବାଟ ଯାକ ସବୁ   ଶୃଙ୍ଗୂଆ ତୋରଣାମଧ୍ୟେ
ସୁଧା ଲେପରେ   ଚନ୍ଦନ ଜଳ ପଢ଼ି   ଅଗରୁ ଧୂପହିଁ ହୋଇପୁ
ହେ ଜନେ । ୧୬ ।

ଏମନ୍ତ ଦୋଳ—ମଣ୍ଡପ ବିଭୂଷଣ   ବଡ଼ନ୍ତେ ରଜନୀ ଶେଷ
ଅରୁଣ ବର୍ଣ୍ଣ   ଅମ୍ବରପଟ—   ଦାଗଚନ୍ଦ୍ର ଚରମେ ପ୍ରବେଶ
ହେ ଜନେ

ଏମନ୍ତ ଯେ ଭାଗ୍ୟବନ୍ତ ଚନ୍ଦ୍ର ଜଣା ଦୋଳ  ନ ପାରନ୍ତି ଦେଖି
ଉଷା କାମିନୀ   ତାରକା ଅଦୃଶ୍ୟରୁ ଦର୍ଶନ ନପାଇ ଦୁଖୀ
ହେ ଜନେ । ୧୭ ।

୪ ଜଗମୋହନ ଛନ୍ଦ

ଅତ୍ୟନ୍ତ ଭାଗ୍ୟବତୀ ପ୍ରାଚୀ ସୁନ୍ଦରୀ ହୋଇ ଅତି ପ୍ରସନ୍ନତା
ସୁଅନ୍ତରେ ଦର୍ଶନ କରେ ଦେଖ ସଦନା ସିନ୍ଦୂର ଚନ୍ଦା
ହେ ଜନେ ।

କୁହୁ କୁହୁ ବାଣୀ କପଟେ କୋକିଳ ସୁନ୍ଦର ବଚନ ଯେ ଭାଷେ
ଏହି ସମୟେ ପ୍ରଭୁ ବିଜେ କରନ୍ତି ଦୋଳ ମଣ୍ଡପ ପ୍ରଦେଶେ
ହେ ଜନେ । ୧୮ ।

ଚଉ ଆନନ୍ଦ ସୁତିର ଘନବାଦ୍ୟ ବାଜଇ ଅତି ପ୍ରବଳେ
କ୍ଷୀର ସମୁଦ୍ର ଗର୍ଜନ ଗଞ୍ଜି ହୋଏ ଜୟ ଶବଦ ଗହଳେ ।
ହେ ଜନେ

ପ୍ରଥମ ଦୋଳ ଦର୍ଶନକୁ ଉଚ୍ଛାହା ହୋଇ ଯେ ଆସନ୍ତି ଲୋକ
ଅବନୀ ମଣ୍ଡଳ ଅଦୃଶ୍ୟ ହୁଅଇ ଆନନ୍ଦ ହୋଏ ଅନେକ
ହେ ଜନେ । ୧୯ ।

ନବୀନ-ରସାଳ— ଫଳ ଫଳଦାତା ପ୍ରଭୁଙ୍କ ଛାମୁରେ ଦେଇ
ନାନା ପ୍ରକାରେ ବରମାନ ମାଗନ୍ତି ଅନୁରାଗବନ୍ତ ହୋଇ
ହେ ଜନେ ।

ବାଞ୍ଛାନିଧି ସେ ବାଞ୍ଛା ପୂର୍ଣ୍ଣ କରନ୍ତି ପରମ ଦୟାଳୁ ଯହୁଁ
ଅଶେଷ କୋଟି ଜନମ ପାପରାଶି ବିନାଶନ୍ତି ଗୃହୁଁ ଗୃହୁଁ
ହେ ଜନେ । ୨୦ ।

ଆହେ ଜନମାନେ ଦେଖି ଅଛ କାହିଁ ହୋଇଥିଲେ କେ ପଣ୍ଡାଇ
ଦେଖିଲା ଲୋକଙ୍କୁ ମହାସୁଖ ଦେଇ ଦୁଃଖ ନଥାନ୍ତି ଦୂଷାଇ
ହେ ଜନେ ।

ଆପଣା ଉତ୍ସବେ ଉତ୍ସବ ଦେବାକୁ ସେହୁ ପ୍ରଭୁ ବିବେକିତା
ଯହିଁ ଉତ୍ସବରେ ବିଧବା-ଲଲାଟେ ଶୋଭା ରଙ୍ଗ ଫଗୁ ଟିକା
ହେ ଜନେ । ୧୯ ।

ଯତି ସନ୍ନ୍ୟାସୀ ନାରୀଙ୍କ ସଙ୍ଗେ ମିଶି ଦର୍ଶନ କରନ୍ତି ରଙ୍ଗେ
ଦୂଷଣ ନୋହେ ଭୂଷଣ ପ୍ରାୟେ ହୋଇ କୁଙ୍କୁମ ଲାଗିଲେ ଅଙ୍ଗେ
ହେ ଜନେ ।

ଏମନ୍ତ ହୋଇ ସେ ବଟ ନାଗରଙ୍କ ଦୋଳ ମହୋତ୍ସବ ଲୀଳା
ବ୍ରହ୍ମାଦି ଦେବ ମାନବ ବାଳବୃଦ୍ଧ ସମସ୍ତେହେଁ ଯହିଁ ଭୋଳା
ହେ ଜନେ । ୧୧ ।

ମନେ ଧ୍ୟାନେ ଲୀନ କରି ଯୋଗୀଜନମାନେ ଯାହା ନ ଦେଖନ୍ତି
ସେ ପ୍ରଭୁ ଏମନ୍ତ ମହାଦୟାବନ୍ତ ମାନବ ସଙ୍ଗେ ଖେଳନ୍ତି
ହେ ଜନେ ।

ଦନ୍ତଦନ୍ତ ଦୋଳା ଉପରେ କମଳା—ବକ୍ଷର କମଳା ଲୀଳା
ଭାବିଲେ ସେ କାଳ ନାହିଁ ନାହିଁ କାଳଦଣ୍ଡ ଭବଭୟ ଜ୍ୱାଳା
ହେ ଜନେ । ୧୩ ।

ବିଶିଷ୍ଟ ଦୋଳ ଅତିବଡ଼ ଗହଳ ନୃପତି ଦର୍ଶନ କରେ
ମହା ପାପରାଶି ଜନ ତାପ ନାଶି ମହାପାତକୀ ନିସ୍ତରେ
ହେ ଜନେ ।

ଉପରେ ବଜେ ଦେବାଧିଦେବଙ୍କ ବାଜେ ଘଣ୍ଟ ଘନ ଘନ
ଚନ୍ଦ୍ରକୁ ଚକୋର ପ୍ରାୟେ ସୁର ନର ସବୁରି ଏକ ନୟନ
ହେ ଜନେ । ୧୪ ।

ମଣୋହି ବସଇ ବନ୍ଦାପନା ହୋଇ ଷାଗ ତୃଷାପ୍ ହୋଲକୁ
ସମସ୍ତ ଲୋକଙ୍କୁ ଗନ୍ଧ ଦାନ ଦେଲେ ଭବ ସିନ୍ଧୁ ତରିବାକୁ
ହେ ଜନେ ।

ବିମାନ ଅରୋହି ପ୍ରଭୁ ଭାବଗ୍ରାହୀ କୁଳ ଦୋଳ ମଣ୍ଡପକୁ
ନୀଳାଦ୍ରି ନବରକୁ ବିଜେ କରି ସେ ମଣ୍ଡନ୍ତି ସିଂହାସନକୁ
ହେ ଜନେ । ୧୫ ।

ଏମନ୍ତ ହୋଇ ସେ ଜଗନ୍ନାଥ ଦେବ ନୃପତିଙ୍କ ଦୋଳ ଲୀଳା
ପାଉଲେ ଏ ଲୀଳା ଲୀଳା ଭବସୂତ୍ରେ ଗୁନ୍ଥି କଣ୍ଠେ କର ମାଳା
ହେ ଜନେ ।

ନୋହିଲେ କଣ୍ଠି ମଣ୍ଡନ କରି କର ଲୋକଙ୍କୁ ସୁନ୍ଦର ଦିଶୁ
ଜଗନ୍ନାଥ-ଭାବ ନ ଜାଣିଲ ଲୋକ ସହଜେ ଦ୍ୱିପାଦ ପଶୁ
ହେ ଜନେ । ୧୬ ।

ଯଉଁ ମାୟାଧର କରଛ ମଣ୍ଡନ କେତେ ଦିନ ଅବା ଥିବ
ନାମ ଅଳଙ୍କାର ପରିଷ୍ଟେ ଶରୀର ସଙ୍ଗତରେ ଏ ନ ଯିବ
ହେ ଜନେ ।

ଯେବେ ଦେବଦୁର୍ଲ୍ଲଭ ହରି-ଗତିସୁଖ ପାଇବାକୁ ଅଛି ମନ
ନାମ ସୁବର୍ଣ୍ଣ ଯତନ କରି କଣ୍ଠିହିକତିରେ ଭୂଳ ଘେନ
ହେ ଜନେ । ୧୭ ।

ହୃଦ ପରୁଅରେ ଥିଲେହି ବେଳରେ କରିବ ଏ ଉପକାର
ପଡ଼ିଗଲେ କାଳେ ନ ବାନ୍ଧିବ ତଳେ ଦୁସହ କାଳ କାନ୍ତାର
ହେ ଜନେ ।

ଏକା ଜଗନ୍ନାଥ   ନାମ କଣ୍ଠି କଣ୍ଠ   ଦେଶରେ କର ଭୂଷଣ
ଯିଲେ କରକୁ   ମଣ୍ଡନ କର କର   ଉତ୍ତମ ଦାନ କଙ୍କଣ
ହେ ଜନେ । ୨୮ ।

ଦୟା ଆଭରଣ   ହୃଦୟରେ ଧର   ସଂସାର ସୁନ୍ଦର ଏହି
ବାର ନାରୀ ପ୍ରାୟେ ବେଶ ହୋଇବାରୁ କହୁଛି କାରଣ ନାହିଁ
ହେ ଜନେ ।

ବିବେକ ବୁଦ୍ଧିରେ ବିଗ୍ରହ ଧର ମୋ   କହିଲେ ଅବା କି ହେବ
କୃପଣକୁ ଦେଖି   ସୁତ କନ୍ୟା ପ୍ରାୟେ ଭ୍ରମଇଁ ଯିବା ରହିବ
ହେ ଜନେ । ୨୯ ।

ଦୀନକୃଷ୍ଣ ବୋଲେ   ଭଲ ହେବା ହେଲେ ଜଗନ୍ନାଥ ନାମ ଘୋଷ
ଯେତେବେଳେ ପଡ଼ ଯିବ କାଳଥାଡ଼ ନୋହିବ ସେ ଅବକାଶ
ହେ ଜନେ ।

ଏହି ଲାଗେ ପାଦ   ପଞ୍ଜୁରି ମଧ୍ୟରେ   ଶୁକ ପ୍ରାୟେ ହୋଇ ପଶ
ହରେ ରାମକୃଷ୍ଣ   ଗୋବିନ୍ଦ ଗୋପାଳ ଅନନ୍ତ ଅଚ୍ୟୁତ ଭାଷ
ହେ ଜନେ । ୩୦ ।



# ସପ୍ତମ ଛାନ୍ଦ

(ଗ୍ରୀଷ୍ମଋତୁ ଚନ୍ଦନ ଯାତ୍ରା ବର୍ଣ୍ଣନ)

ବସନ୍ତ ବରେ, ମଙ୍ଗଳ ଚନ୍ଦ୍ରଶେଖ ବାଣୀରେ ଗାଇବ ।

ଅହେ ସାଧୁମାନେ ଶୁଣ ଏକମନେ ଚନ୍ଦନ ଉତ୍ସବ ଚରିତ
ଗ୍ରୀଷମ ଋତୁରେ ଦିନକର-କରେ ମହୀ ହୋଏ ମହାତପତ
ସ୍ୱଜନେ !
ଶୁଖନ୍ତି ମହା ସରୋବର ।
ମହା ବରହ୍ମଣୀ-ପ୍ରାୟେ ତରଙ୍ଗିଣୀମାନେ ହୁଅନ୍ତି ଶୀର୍ଣ୍ଣତର । ୧ ।

କ୍ରୁହ୍ମୀ ପାନଜନ ମନ ପରାଏ ଦିବସ ହୋଏ ସନ୍ତପନ୍ତ
ଦିଶେ ଦିଶେ ମୃଗତୃଷ୍ଣା ନୃତ୍ୟ କରେ ମୃଗାକ୍ଷି ନୟନ ଯେମନ୍ତ
ସ୍ୱଜନେ !
ଜାତ ହୋଏ ବାତମଣ୍ଡଳୀ ।
ଠାବେ ଠାବେ ତରୁ ଲତାମାନେ ପୂରି ଆତପଘାତରେ ମଉଳ । ୨ ।

ମହାତାପରେ ପଣ୍ଡିତ ପ୍ରାୟେ ମଧୁପାଣ୍ଡବ ହରଷ ସୁମନ
ନ ଛାଡ଼ି କାମ ବୃତ୍ତି ଦୂତଭାବକୁ ପ୍ରଫୁଲ୍ଲ ଫୁଲରେ ଶୋଭନ
ସ୍ୱଜନେ !
ହେଲେ ସୁକୁମାର ଶିରୀଷ
ଢେଡ଼େ ନୀରସରେ ଶରଣେ ବକାଶ ବାସରେ ପୂର୍ତ୍ତି କନେ ଦଶ । ୩ ।

ବନେ ବନାନଳ ଜଳନ୍ତି ପ୍ରବଳ ଫୁଟନ୍ତି ଦ୍ରୁଣ୍ୟଜମାନେ
ଶିମୁଳୀ ଫୁଲ ଫୁଟି ତୁଳା ସଂଘାତ ଉଡ଼ନ୍ତି ପବନେ ଗଗନେ
ସ୍ୱଜନେ !
ବନଜୀବେ ବଡ଼ ଅକୁଳ
କରୀନ୍ଦ୍ର ବାରଣ ଅନେକ କଷଣ ଲଭନ୍ତି ନ ପାଇ କମଳ । ୪ ।

ଗ୍ରୀଷମେ ବ୍ୟାକୁଳ ହୋଇ ପକ୍ଷୀକୁଳ ଲୀନ ହୋଏ ତରୁମାନଙ୍କେ
ଯେନ ଉଦୁଗାର ଗନ୍ଧର୍ବ ବଇଶ ଲୋଟନ୍ତି ପଡ଼ି ପାଦପଙ୍କେ
ସୁଜନେ !
ମୟୂର ପୁଚ୍ଛ ଛାଇତଳେ ।
ଭୟକୁ ପକାଇ ଭୁଜଙ୍ଗମ ଯାଏଁ ଶୟନ କରଇ ବ୍ୟାକୁଳେ ।୫।

ମତ୍ସ୍ୟ କଚ୍ଛପ ମଣ୍ଡୂକମାନେ ମୂର୍ଚ୍ଛାଗତ ହୋଅନ୍ତି ଅଳ୍ପଜଳେ
ପଥିକମାନେ ପଥଶ୍ରମେ ପ୍ରବେଶ ହୁଅନ୍ତି ବୃକ୍ଷପାଦତଳେ
ସୁଜନେ !
ଆତପେ ଭୁଙ୍ଗସ୍ତନାମାନେ ।
ଭୁଙ୍ଗସ୍ତନରେ ଚନ୍ଦନ ପଙ୍କ ଲେପି ପ୍ରବୋଧ ଲଭନ୍ତି ବଦନେ

ଠାବେ ଠାବେ ଜଳ କ୍ରୀଡ଼ାରେ ଚଞ୍ଚଳ ଚଞ୍ଚଳାପ୍ରଭନେତ୍ରାମାନେ
କେ ଅଙ୍ଗ ବୁଡ଼ି ପଶନ୍ତି କେ ଲେଉଟନ୍ତି କେ ଜଳ ପକାନ୍ତି ସଘନେ
ସୁଜନେ !
ଜଳ କୁସୁମ କେ ତୋଳନ୍ତି ।
ପଥଁର ଗୋଡ଼ାଇ କେତେ ଗଙ୍ଗ କର ଅନକୁ ଉଠାଇ ଖେଳନ୍ତି ॥

ପଣା ପଇଡ଼ ପଣସ ପକ୍ୱ ଆମ୍ର ଦ୍ରାକ୍ଷ ବଦନେ କେ ଦିଅନ୍ତି
ପଣାଛତ୍ର ଦେଇ କେ ପୁଣି ପବିତ୍ର ମନରେ ଆନନ୍ଦ ହୁଅନ୍ତି
ସୁଜନେ !
ଶିବେ କେ କରେ ଜଳଶାଇ ।
ସେବକ ମାଳୀମାନେ ଉଚ୍ଚେ ଡାକନ୍ତି ଜଳ ଘଟମାନ ବସାଇ ।୬।

ଜଗନ୍ନାଥ ଅନୁଗ୍ରାହୀ ଲୋକମାନେ ଜଳଯନ୍ତ୍ର ପୁରେ ପ୍ରବେଶ
କର୍ପୂର ଚନ୍ଦନ ଅଙ୍ଗେ ବିଲେପନ ପଙ୍ଖା ପବନରେ ସନ୍ତୋଷ
ସୁଜନେ !
ଧନ ଦରଶ୍ରେ ସେ ଦରଶେ ।
ବାସୁଦେବ କଥା ଅମୃତ ମିଶାଇ ବୀଣା ମର୍ଦ୍ଦଳ ଗୀତ ରସେ ।୧୦।
ଏମନ୍ତ ସମୟେ ଦେଖି ଦେବଗ୍ୟେ ବ୍ରହ୍ମାଣ୍ଡ ଶୀତଳ ଅର୍ଥରେ
ଅନେକ ଚନ୍ଦନ ସୁବାସ କର୍ପୂର ଲାଗି ହୁଅନ୍ତି ଶ୍ରୀଅଙ୍ଗରେ
ସୁଜନେ !
ବାଜଇ ନାନା ବାଦ୍ୟମାନ ।
ଘଣ୍ଟ ମର୍ଦ୍ଦଳ ବେଣୁ ବୀଣା ଗୀତରେ ପୂରଥାଇ ଜଗମୋହନ ।୧୧।
ବିଚିତ୍ର ବିବିଧ ବିଚିତ୍ର ବେଶମାନ ହୋଇ ନୃତ୍ୟ କରନ୍ତି ଅପସରୀ ।
ପଙ୍ଖା ଚାମର ଆଲଟ ପଡ଼ିବାରେ ଚୋରି ଉପରେ ଦଶେ ଢେରି ।
ସୁଜନେ !
ତେତେବେଳେ ଯେଉଁ ଆନନ୍ଦ ।
ଅବଲୋକନ କଲା ଲୋକ ଜାଣଇ ଜାଣନ୍ତି ପ୍ରଭୁ ଆଦିକନ୍ଦ ।୧୨।
କର୍ପୂର ଉଷ୍ଣା ପଦ୍ମ ଲାଗିହୋଇ ଅଶେଷ ପରମ ମଙ୍ଗଳ
ବର କବର ଅଳକା ଏକ ସରି ଦୋସରି ଫୁଲ ଚୂଲମାଳ ।
ସୁଜନେ !
ସେହି ପ୍ରଭୁଙ୍କ ଶୋଭା ପାଏ ।
ଥାଉ ସେ ଚନ୍ଦନ-ଯାତ୍ରା-ବେଶ ମନେ ପିଣ୍ଡରେ ପ୍ରାଣ ଥିବାଯାଏଁ ।
କର୍ପୂର ଲାଗ ସାରି ଭୋଗ ବସଇ ହୁଅନ୍ତେ ପ୍ରଭୁ ବନ୍ଦାପନା
ମଦା ।ତକୀ ସୁନାଶିର ହୁଅନ୍ତି କାଲଲୁ ସେ କାଲ ଭାବନା
ସୁଜନେ !

ଆଭରଣ ହୋଇ ଯାନକୁ ।
ବଡ଼ଦାଣ୍ଡେ ବଡ଼ ଗହଳ ଲଗାଇ ବିଜୟେ କରନ୍ତି ଗୃହକୁ । ୧୪ ।
ଭବଜଳ ରାଶି ମଧ୍ୟରେ ନ ଭାସି ଯେଉଁ ପ୍ରଭୁ ନାମ ବଳରେ
ସେ କାଳ ବଳରେ କଉତୂହଳରେ ବୁଡ଼ନ୍ତି ଅଳପ ଜଳରେ
ସୁଜନେ !
ରସିକନାଗର ଶେଖର ।
ନୃତ୍ୟ ଗୀତ ରସଭାବେ ବଡ଼ ବଶ କ୍ଷଣେ ନ କରନ୍ତି ଅନ୍ତର ।୧୫।
ଦେଖି ଦିନ ଶେଷ ହୋଇ ଦିବ୍ୟ ବେଶ ଗୃହରେ ବିଜଏ କରନ୍ତି
ଖଦ ଚାମର ଆଲଟ ପଙ୍ଖା ଧରି ସେବକେ ଖଟଣୀ କରନ୍ତି
ସୁଜନେ !
ଧରି କେ ଚନ୍ଦନ ପେଟିକା ।
ଆଗେ-ପାଶେ ରହି ଆନନ୍ଦକୁ ବହି ମାରନ୍ତି ଆରୋହି ନଉକା ।୧୬
ମଣ୍ଡପ ଅଙ୍କେ ମଣିମୟ ପଲଙ୍କେ ବହୁମୂଲ୍ୟ ଦିବ୍ୟ ବିଠଙ୍କେ
ଅପସରଙ୍କୁ ଅପସରି ବିଜୟେ କରିଥାନ୍ତି ପ୍ରଭୁ ନିଶଙ୍କେ
ସୁଜନେ !
ଚନ୍ଦ୍ରଉଦୟା ଚନ୍ଦ୍ର ଦୀପ ।
ଚାରିପାଶେ ଲାଗି ଶୋଭା ପାଉଥାଇ ଚହଟି ଥାଇ ଗନ୍ଧ ଧୂପ । ୧୭ ।
ଚାରୁ ଚାମୀକର ଚମ୍ପକବରଣୀ ଚଞ୍ଚଳ ଚାମର ଲୋଚନୀ
ଚଉଷଠି କଳା ରସରେ କୁଶଳା କନ୍ଦର୍ପଦର୍ପବିମୋଚନୀ
ସୁଜନେ !
ଚନ୍ଦ୍ରବଦନୀ ଚାରୁକେଶୀ ।
କୁନ୍ଦସୁନ୍ଦରଦଶନୀ ମନ୍ଦହାସୀ ମଧୁରମଧୁପିକଭାଷୀ । ୧୮ ।
ନିତମ୍ବବତୀ ଉଚ୍ଚକୁଚ-ଶୋଭିନୀ ଘନଜଘନୀ ନୃତ୍ୟକାରୀ
ତାଳ ମାନ ଗ୍ରହ ଲୟରେ ଅରହ ସକଳଜନମନୋହାରୀ

ସୁଜନେ !
ନୃତ୍ୟ କରନ୍ତି ସେ ହରଷରେ ।
ନାନା ଅଳଙ୍କାର ଅଙ୍ଗେ ଅଳଙ୍କାର କରି ମସ୍ତକ ହରଷରେ । ୧୯ ।
ମନମଥ ଫାଶ ପରିବେ ପ୍ରକାଶ ଶୋଭା ହସ୍ତକ ମସ୍ତ ଭୋଗ
କେବଳ ସେକାଳେ ଶମଦମ ବଳେ ନୋହେ କାହାର ମନ ଭୋଗ
ସୁଜନେ !
କେତେ କହିବି ସେ ଚରିତ ।
ଚନ୍ଦ୍ର ଉଦେ କାଳେ ଗଗନମଣ୍ଡଳେ ସହଜେ ନ ଦିଶେ ଖଦ୍ୟୋତ ॥
ଜଗତ କୃତାର୍ଥ କରିବାକୁ ପାଥ ରଥରେ ବିଜେ ଜଗନ୍ନାଥ
ଦରଶନେ ଜନଙ୍କର ଦରଶନେ ମହା ପରମ ଗତିପଥ
ସୁଜନେ !
ଧନ୍ୟ ସେ ନଉକା ବିହାର ।
ଇନ୍ଦ୍ରପଦ ବିହି ଇତର ଦିଶଇ ସେ ଅବଲୋକନ ଯାହାର । ୨୧ ।
ବୃନ୍ଦାରକବୃନ୍ଦ ବଢ଼ାଇ ଆନନ୍ଦ ଜୟ ଜୟ ସ୍ତୁତି କରନ୍ତି
ଦୁନ୍ଦୁଭି ବଜାଇ ସପୁଲକ ହୋଇ ଶିରେ କୁସୁମ ବରଷନ୍ତି
ସୁଜନେ !
ଯାହା ବଢ଼ାଇ ଦେବରାଏ ।
ବିମାନ ଆରୋହି ଜନମନ ମୋହି କରନ୍ତି ବାହୁଡ଼ା ବିଜୟେ । ୨୨ ।
ନେତାତପତ୍ର ଚନ୍ଦ୍ର ସୂର୍ଯ୍ୟ ତରସ ବଲା କନାଠି ମାଲ ମାଲ
ଖଦି ଗୃମର ଅଲଟ ପଙ୍ଖା ଲେଖା କହି ନୁହଇ ସେ ପ୍ରବଳ
ସୁଜନେ !
ଚନ୍ଦ୍ରଚାପ ଚନ୍ଦ୍ରଉଦୟା ।
ହୁଲା ବହୁଡ଼ା ଧାଡ଼ି ଧାଡ଼ି ଲଟି ସେ ନ ଦେଖାନ୍ତି ଚନ୍ଦ୍ରଉଦୟା ।୨୩।

ବାଟ ଯାକ ରଙ୍ଗଭୂମି କରି ରଙ୍ଗ କରନ୍ତି ବର-ବାରାଙ୍ଗନା
କାମଶାସ୍ତ୍ର କଥା ସଙ୍ଗୀତ-ଜାଣନ୍ତି ସମସ୍ତେ ପ୍ରେମ ପ୍ରୀତଯୋଜନା
ସୁଜନେ !
ଧନ୍ୟ ତାହାଙ୍କ ଭାଗ୍ୟରାଶି ।
ଧୂପ ସାରି ବଡ଼ଠିଆରି ବଢ଼ାଇ ପୁଷ୍ପ ଅଞ୍ଜୋଳି କରି ଶେଷେ
ସୁଜନେ !
ପହୁଡ଼ନ୍ତି ଦିବ୍ୟ ପଲଙ୍କେ ।
ପ୍ରାଣର ବଲ୍ଲଭୀ ପାଟ ମହାଦେବୀ କମଳା ସେବନ୍ତି ନାଥଙ୍କ । ୨୪ ।
ନିତି ଏହିମତି ନୂତନ ଉତ୍ସବ ହୁଅଇ ସ୍ନାନ ଯାତ୍ରା ଯାଏ ।
ତାହିତ ଶୁଣିମ ଜନତାପ ଯିବ ମହା ପବିତ୍ର ହେବ କାୟେ
ସୁଜନେ !
ସଂସାରେ ଏହି କଥା ମୋକ୍ଷ ।
ଏ ବାହାରେ ଅଉ ଯେତେକ ଦେଖୁଛ ଇନ୍ଦ୍ରଜାଲରୁ ବଳି ମିଛ ।୨୫।
ଯେଉଁ ଦେହ ଘେନି ଜନମି ଅବନୀ ତାହା ନ ନେଇ ଯିବା ବେଳେ
ମୋହୋ ଘର ମୋହୋ କୁଟୁମ୍ବ ବୋଲିଣ ଅବୋଧ ମାୟାମୋହ ଜଳେ
ସୁଜନେ !
ମନେ ବିଚାର କର ଏହି ।
କେ କାହାର ତାତ କେ କାହାର ମାତ କେ କାହାର ଭାଇ ବନ୍ଧୁ ସାହି ।
ପାରିଲେ ଦୀନଜନରେ ଦାନ ଦେଇ ସକଳ ଜୀବେ ଦୟା କରି
ଧର୍ମ କର୍ମ କରି କିଛି ନ ବିଚାରି ସାଧୁ ସଙ୍ଗତରେ ବିହରି
ସୁଜନେ !
ଯଉଁ ଶ୍ରୀନୀଳଗିରିନାହା ।
ମନ ବଚନ କର୍ତ୍ତବ୍ୟେ ଦୀନକୃଷ୍ଣ ଭରସା କରିଅଛି ତାହା । ୨୬ ।

---



# ଅଷ୍ଟମ ଛାନ୍ଦ

( ଗୁଜ୍ଜରୀ ବଙ୍ଗେ ଝେମଣ୍ଠା ରାଗେ ଗୀୟତେ )

ଅହେ ସାଧୁଜନମାନେ କର ଶ୍ରବଣ
ମହା ଗ୍ରୀଷମ ଋତୁରେ ଆରତତ୍ରାଣ ।
ଅନେକ ଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ ହେଲେ
ଅନେକ ଶୀତଳ ଦ୍ରବ୍ୟ ତ ମଣୋହି କଲେ
ଅନେକ ଆଲଟ ଲାଗି ହେଲେ ଟରଙ୍ଗ
ଏତେକେ ସନ୍ତାପିତ ହୋଇଲା ଶ୍ରୀଅଙ୍ଗ । ୧ ।

ସ୍ନାନ କରିବାକୁ ମନେ ବିଚାର କରି
ସମ୍ଭ୍ରମ ହୋଇଲେ ଶଙ୍ଖ ଶାରଙ୍ଗଧାରୀ ।
ଘନ ମଣ୍ଡପକୁ ସୁଧା ଲେପ ଦିଆଇଁ
ମଣ୍ଡଣି ନିମିତ୍ତରେ ଭଣ୍ଡାର ଫିଆଇଁ ।
ପାଟ ନେତ ପତନୀ ଦିବ୍ୟ ଚାମର
ଗୃହୁ ଚନ୍ଦ୍ରାତପମାନ କଲେ ବାହାର । ୨ ।

ମାଧ ବନ ଦୁରଙ୍ଗ ସିନ୍ଦୂର ଅମ୍ବର । ?
ମଣ୍ଡିବାରେ ଆଡ଼ମ୍ବର ଦିଶେ ଅମ୍ବର
ଫୁଲ ଚକ ମଧ୍ୟେ ଫୁଲ ଝମ୍ପା ଶବ୍ଦନେ
ଅବଲୋକନରେ ମନ ନୟନ ରଞ୍ଜେ ।
ଫୁଟିଲା ସୁବର୍ଣ୍ଣପଦ୍ମ ଦିଶିଲା ତୋଷ
ତାରତର ମୁକୁତା ମଣି କେଶ କେଶ । ୩ ।

ବିଚିତ୍ର ଚିତ୍ର ପ୍ରତିମା-ମାନଙ୍କୁ ଦେଖି
ତହ ପ୍ରାୟେ ନ ଚଳଇ ଏ ଅକ୍ଷି ।

ଚନ୍ଦନ ଜଳ କର୍ପୂର ଚୂଳ ମିଶାଇ
ଅଗୁରୁ ଧୂପରେ ସୁବାସିତ କରାଇ ।
ସଜେ ବାଟ ଯାକ ଏହି ପ୍ରକାରେ ତୋରା
ମଣି ଧରଣୀ ମସ୍ତକ ମଣ୍ଡନ ପରା ।
ଛଇଲ ନାଗର ପ୍ରଭୁ ପୁରୁଷ ସିଦ୍ଧ
ଏକେତ ସକଳ କଳାବନ୍ତ ଅଗାଧ ।
ନୋହିଲେ ନନ୍ଦ ସ୍ୱନନ୍ଦ ଅରମ୍ଭ ଏତେ
ମୁଁ କେତେ କହିବ ତୁମ୍ଭେ ଶୁଣିମ କେତେ ।
ଶେଷ ନୁହଇ ଅଶେଷ ଅପରିମେୟ
ସପ୍ତପଞ୍ଚ ତରଙ୍ଗ ଗଣିଲା ପ୍ରାୟ ।
ନାନାରୂପେ ମଞ୍ଚାମଣ୍ଡପକୁ ମଣ୍ଡାଇ
ଭଜନ ଲୋକଙ୍କୁ ଉଚାଟ ବଳେ କରାଇ ।
ଯଜ ଲାଗି ବଜେ ରାଜ ପଦରେ ଥାଉ
ଯଜ ଯାଜ ଯାଜ ବୋଲି ବାଜେ ସଜାଉ ।
ସୁର ନର ଅସୁର ଗନ୍ଧର୍ବ ବାଦ୍ୟରେ
ସମୁଦ୍ର ଉଚ୍ଛୁଳ ସୁର ବର୍ଜିନ ପୁରେ ।
ଅନେକ ହୁଲା ଦନ୍ତୁଭି ଚନ୍ଦ୍ର ଉଦୟା
ଚନ୍ଦ୍ରାପ ଲାଗି ଗ୍ରଜେ ଚନ୍ଦ୍ର ଉଦୟା ।
ଅବରତେ ଗହଳ ଚହଳ ଆନନ୍ଦ
ଅମ୍ବରେ ରହି ଦେଖନ୍ତି ଅମର ବୃନ୍ଦ ।
ଅପସରା-ମାନେ ନୃତ୍ୟ କରନ୍ତି ମେଳ
ଝଟକ ବଜୁଳ ଅଙ୍ଗମାନ ଲୁଣ୍ଣଳୀ ।
ଅଗୁରୁ ଧୂପ ସମସ୍ତ ନଗରେ ବାସେ

ପୁଷ୍ପ ବାହୃପ୍ରାସ୍ତେ ସ୍ୱର୍ଗ ଫୁଲ ବରଷେ ।
ଧବଳ ଛନ୍ଦ ଉଭୟ ପାଶରେ ଉଡ଼େ
ଝାଡ ଗୃମର ଅଳଟ ପାରୁଟେ ପଡ଼େ ।
ମହିମା ତାଙ୍କ ଗରିମା କି କହି ତହିଁ
ଅଣିମାଦି ଷମାଦାତା ବିଜୟେ ଯହିଁ । ୮ ।
ଜୟ ଜୟ ଶବଦ ଶୁଭଇ ଅନେକ
ଏକଖଣ୍ଡ ଚଉଦିଶ ବ୍ରହ୍ମାଣ୍ଡଲୋକ ।
କେ କେତେ ଗୀତ କବିତ୍ୱ ସ୍ତୁତି କରନ୍ତି
ଅବ ଲୋକନେ କଳିକଳୁଷ ହରନ୍ତି ।
ଅହା ସେ ପିହୃସି ଗନ୍ତା ପାଗ ଗୃଭୁସି
ଗୃହିଁଲେ ମନ ଅନନ୍ଦେ ଉଠଇ ପୂରି । ୯ ।
ଶ୍ରୀ ବଳଭଦ୍ର ସୁଭଦ୍ରା ସୁଦରଶନ
ଆଗରେ ଚଳାଇ ପଛେ ଜଗମୋହନ ।
ଶ୍ରୀକର ପଇଠି ଦେଇ ଭୃତ୍ୟଙ୍କ କରେ
ଭଙ୍ଗିମା ଭଙ୍ଗିମା ହୋଇ ବିଜେ ସଧୀରେ ।
କି ଉପମା ଦେବା ଯହିଁ ବରନ ନାହିଁ
କବି ହେଲେ କଣ୍ଠାରେ କାହା ନ କହି ।
ନାନା କାମନା କାମିଙ୍କୁ ଦେବା ଅର୍ଥରେ
ବିଚିତ୍ର କଳ୍ପତରୁ କି ଗଲେ ପୃଥୀରେ ।
ଏମନ୍ତ କଳ୍ପନାରୁ ବା କହି କୁଅନ୍ତା
ଯେବେ ସେ ଅମୃତ ଫଳ ଦାନ ଦିଅନ୍ତା ।
ସଂସାର ଶୋକ ହରିବା ତହିଁରେ କାହିଁ
ଏହିପେନ ଦୃଷ୍ଟିକି ସେ ଆସଇ ନାହିଁ ।

ପୂର୍ଣ୍ଣଚନ୍ଦ୍ରମା ମଣ୍ଡଳରେ କଳଙ୍କ ଅଛି
ଏ ଅସ୍ପୃଶ୍ୟ କଥା କହନ୍ତାଇ ଭରତେ ।
ଏବେ ସେ ଦିବସେ ପୂର୍ଣ୍ଣ ଜ୍ୟୋତି ବହନ୍ତି
ଅକଳଙ୍କ ସଦା ପୂର୍ଣ୍ଣଭାବେ ଥାଆନ୍ତି ।
ଅନ୍ଧ ଅନ୍ଧକାର ବିନାଶୀ ହରନ୍ତି ଦୁଃଖ
ଶାନ୍ତି ବ୍ରହ୍ମ ପରଯନ୍ତେ ଦିଅନ୍ତି ସୁଖ ।
ଉପମାକୁ ନ ଆସଇ ପ୍ରଭୁଙ୍କ ବଦନ
କହିଲେ ଲେଖା ହେବା ଅବିବେକ ନିର୍ଘଣେ ।
ଭୂତଳେ ସମାନ ନୋହି ସକଳ ପୁରେ
ଏତେବେଳେ ଦେଖ ଚହ୍ନଛନ୍ତି ଉପରେ ।
ଅଗଣ୍ଡ ଲୋକର ଯହିଁ ଗଣ୍ଡହି ପଡ଼ି
ଧନ୍ୟ ଧରଣୀଭାଗ୍ୟ ତା ଶିରେ ବହନ୍ତି । ୧୩ ।
ଅଳପ ହସିଲା ହୋଇ ରଙ୍ଗାଧରେ
ଅପସର ସେବକ ମାନଙ୍କ ଉପରେ ।
ଅଳପ ବିଶ୍ରାମ ଯହିଁଠାରେ କରନ୍ତି
ସବୁ ସୁଖ ସମ୍ପତ୍ତି ସେଠାରେ ଦିଅନ୍ତି ।
ଯହିଁ ଅଙ୍ଗେ ପଡ଼ଇ ସେ ଅମୃତ ଦୃଷ୍ଟି
ସେ ଦଣ୍ଡେ ବୃଷ୍ଟି ହୁଅଇ ଆନନ୍ଦ ସୃଷ୍ଟି । ୧୪ ।
ମତ୍ତଗଜ ପ୍ରାୟେ ବେନି ପାଶରେ ଝୁଲି
ମହାଭୁଜଦ୍ୱୟରେ ଭାବେ ଭୃତ୍ୟଙ୍କୁ ତୋଳି ।
ପୁଣି ସିଂହ ବିକ୍ରମିଲା ପରାଏ ହୋଇ
ମନ୍ଦ ମନ୍ଦ କରି ପାଦପଦ୍ମ ପକାଇ ।
କେବେ କେ କହିବ ସେ ଶୋଭିବା ଶୋଭୁଛି

ଯେଉଁ ଗୃଭୂଷାରେ ଶେଷ ହୋଏ ଶର୍ବରୀ ।
ରଜତ ଗିରିକ ଗଜ ଉଠିଲା ପ୍ରାୟେ
ଅବ୍ରୋହଣେ ଅବ୍ରୋହନ୍ତି ଦେବାଧିରାୟେ ।
ପ୍ରବେଶ ସ୍ନାନମଣ୍ଡପ ଚକା ଉପରେ
ସେ ଶୋଭାକୁ ଉପମା ନ ଦିଶେ ସଂସାରେ ।
ହରନ୍ଦର ଶିହରେ ବା କଇଲାସରେ
କେହି କେହି ଏମନ୍ତ ଭାବନ୍ତି ମନରେ ।
ରଜତ ପର୍ବତେ ହୀରା ମର୍କତ ଶୃଙ୍ଗ
ମଧରେ ସୁବର୍ଣ୍ଣ-ଲତା ହୋଇଛି ସଙ୍ଗ ।
ଏମନ୍ତ ବୋଲିବାକୁ ବଚନ ନ ଆସେ
ଅଲକ୍ଷରେ ଲକ୍ଷ କେତେବେଳେ ହେ ବସେ ।
ଅଶେଷ ଶୋଭା ତହିଁକ ମନ ନ ଯାଉ
ଆକାଶ ଯେମନ୍ତେ ଦୃଶ୍ୟଦୃଷ୍ଟି ନ ପାଇ । ୧୭ ।
ଏ ସମୟେ ଉଦେ ନଭ ଚୁମ୍ବନ୍ତି ଚନ୍ଦ୍ର
ଉଦୟଗିରେ ଉଦୟେ ଗ୍ରହ ନରେନ୍ଦ୍ର ।
ମାନବେ ମାନସ ସ୍ନାନ କଥାରେ ଦେଇ
ସ୍ନାନ କରୁ ଆସନ୍ତି ଯେ ସମ୍ଭ୍ରମ ହୋଇ ।
ଦେଖନ୍ତି ସ୍ନାନ ମଣ୍ଡପେ ନୀଳାଦ୍ରିଚନ୍ଦ୍ର
ଆରତ ଅଘ ବାରଣ ମତ୍ତ ପାରୀନ୍ଦ୍ର । ୧୮ ।
ଉତ୍ତର ଦିଗରେ ଅଛି ସୁବର୍ଣ୍ଣ କୂପ
ତିନ କୋଟି ପଚିଶ ଲକ୍ଷ ତୀର୍ଥରୂପ ।
ଘଣ୍ଟ ମର୍ଦ୍ଦଳ ବଜାଇ ଅର୍ଦ୍ଧରାତ୍ରରେ
ତହୁଁ ଜଳ ଆଣନ୍ତି ସୁବର୍ଣ୍ଣ ପାତ୍ରରେ ।

ଅଧିବାସ କରି ତାହା ଥିଅନ୍ତି ନେଇ
ନୀଳାଦ୍ରି ନିବାସ ସ୍ନାନ କରିବା ପାଇଁ । ୧୯ ।
ମନ୍ତ୍ର ବଧାନେ ସେ ଜଳ ସ୍ନାନ କରନ୍ତି
ମାନବଙ୍କ ଗର୍ବ ଜଳସ୍ନାନ ହରନ୍ତି ।
ପୁଣି ବହଳ ଚନ୍ଦନ ଜଳ ଏଡ଼ାଇ
ନିଃସଂଶୟେ ସଂସାର ସନ୍ତାପ ବୁଡ଼ାଇ ।
ସେ କାଳରେ ପ୍ରଭୁଙ୍କର ଯେମନ୍ତ ଶୋଭା
କେ କେଉଁ ଉପମା ତହିଁ କରିବ ଉଭା ।
ନିର୍ମଳ ଗଗନେ ଉଦେ ଶରଦ ଘନ
ଗଙ୍ଗା ଯମୁନା ଉପରେ କରେ ଗମନ ।
ଏମନ୍ତ ବୋଲି ବୋଇଲେ କେଉଁ ବଡ଼ାଇ
କେ ଦେବ ହୃଦରୁ ଘନ ତାପ ଛଡ଼ାଇ ।
କବି ବଚନ ଶୃଭୁଷା ରଖିବା ପାଇଁ
ଅଲକ୍ଷ୍ୟ କଥାରେ ଲକ୍ଷ୍ୟ କରଇ ନେଇ । ୨୧ ।
କେ ବୋଲେ ଗ୍ରୀଷମେ ପଦ୍ମାକରକୁ ମଣ୍ଡି
ବାହାର ହୋଇଲେ ଯେହ୍ନେ ଦଶଇ ହାଥୀ ।
ଏହିରୂପେ ନାନାକଥା ମାନ କହନ୍ତି
ଭବଗ୍ରାହ୍ମି ନାଥ ତା ଭାବରେ ବହନ୍ତି ।
କନ୍ଦର୍ପ ଦର୍ପ ହରଇ ଯେଉଁ ଶୃଭୁଷା
କେ ଯଶ ପାଇବ ତହିଁ ଉପମା କରି ।
ସ୍ନାନ ବଢ଼ାଇ ପ୍ରଭୁ ହୃଅନ୍ତି ପ୍ରବେଶ
ଲାଗି ହୋଇ ଝୀନ ପୀତ ପଟ୍ଟନ ବାସ ।
ଶ୍ରୀଭକ୍ତେ ଗଉଁଛ ଦିବ୍ୟ ଡାଳମ୍ବା ନେଇ

* ଜଗମୋହନ

ସରହ୍ଣ ସଚନ୍ଦ୍ର ମୋହଇ ଜଗତ ।
ଫୁଲମାନ ଚୂଳ କରପଦ ଅଳକା
ସ୍ପୃହିଲେ ଛାଡ଼ଇ ଭବ ବନ୍ଧନ ଦକା ।
ଏହିରୂପେ ଭାଇ ବଳଭଦ୍ରଙ୍କ ବେଶ
ଫୁଲମାଳ ମାନଙ୍କେ ଶ୍ରୀଅଙ୍ଗ ଅଦୃଶ୍ୟ ।
ବେନି ପାରୁଶରେ ଖାଗ ଛତ୍ର ଉଡନ୍ତ
ଅନେକ ଖଦ ଚାମର ପଙ୍ଖା ପଡ଼ନ୍ତ ।
କହି ନହୁଇ ସେ କାଳ ଶୋଭା ସମ୍ପତ୍ତି
ମହାଭଡ଼ ଗହଳେ ଲୋକ ଯନ୍ତାଯନ୍ତି ।
ଗୀତ ବାଦ୍ୟ ନୃତ୍ୟ ଜୟଜୟ ଶବଦ
ବ୍ରହ୍ମବେତ୍ତା ମାନଙ୍କର ନିଗମ ନାଦ ।
ଭାଟଙ୍କର କଏବାର ସାଧୁ କୀର୍ତ୍ତନ
ଏକ ହୋଇ ସବୁଧ୍ୱନି ପୂରେ ଗଗନ ।
କେ ଚନ୍ଦନ ଜଳମାନ ଧରି ବସନେ
ଧର ଧର ବୋଲି ଦିଅନ୍ତି ଯଜମାନେ । ୨୫ ।
ମଣୋହି ବଢ଼ାଇ ପ୍ରଭୁ ଜଗଦୀଶର
ବାହୁଡ଼ା ବିଜୟେ କରିବାକୁ ବିଜେ ର ।
ବଳଦେବ ଠାକୁରଙ୍କୁ ଆଗରେ କରି
ପଛ ପଟୁଆରେ ନୀଳଗିରି କେଶରୀ ।
ଦକ୍ଷିଣ ମୃଦଙ୍ଗ ବନାପନା ହୁଅନ୍ତି
ଦେଖିଲା ଲୋକଙ୍କୁ ଚତୁର୍ବର୍ଗ ଦିଅନ୍ତି ।
ନୀଳାଦ୍ରି ନବରେ ପ୍ରଭୁ ପ୍ରବେଶ ହୋଇ
ଦଶ ପାଞ୍ଚ ଦିନ ଦରଶନ ନ ଦେଇ ।

ଜନ ନୟନ ଉତ୍ସବ କରିବା ପାଇଁ
ନେତ୍ର ଉତ୍ସବ ଯାତ୍ରା କରନ୍ତି ଗୋସାଇଁ ।
ତଦ ଉତ୍ତରେ ଗୁଣ୍ଡିଚା ନେତ୍ରାଳଙ୍କାର
ଯେଉଁ ରଥସ୍ଥିତ ମହାପବିତ୍ରକର ।
ଶ୍ରୀଗୁଣ୍ଡିଚା ବୋଲି ଭକ୍ତେ କୀର୍ତ୍ତନ କଲେ
ସମସ୍ତ ବେଦନାମାନ ଛୁଟଇ ଭଲେ । ୧୮ ।
ରଥେ ବିଜେ କଲ ପ୍ରଭୁ ଜଗଦୀଶ୍ୱର
ସେ ଯାଇଁ ପ୍ରଭବନ୍ତି ବ ଯେଉଁ ଜଳର ।
ସେ ଜଳ ସ୍ନାନରେ ଯେତେ ପୁଣ୍ୟ ହୁଅଇ
କି କରିବ ଗଙ୍ଗା ଗୟା-ସାଗର ଯାଇ ।
ଶ୍ରୀଗୁଣ୍ଡିଚା ଶ୍ରୀଗୁଣ୍ଡିଚା ବୋଲି ହେ ଜନେ
ଶ୍ରୀଗୁଣ୍ଡିଚା ଦୀନକୃଷ୍ଣ ଗାଉଛି ବଚନେ । ୧୯ ।

# ନବମ ଛାନ୍ଦ

## ଗୁଣ୍ଡିଚ୍ଚ ବର୍ଣ୍ଣନା

( କେଦାର ରାଗ ଝମ୍ପା )

ଏବେ କହିବ ଶୁଣ ହେ ଜନେ
ଏକ ଧାନରେ ଆନନ୍ଦ ମନେ
ଶ୍ରୀ ଜଗନ୍ନାଥ ଦେବରାଜଙ୍କ ଗୁଣ୍ଡିଚ୍ଚ କଥା ହେ ।
କର୍ଣ୍ଣ ପଥରୁ ଅମୃତମୟେ
ଅଶେଷ ପାପ କରଇ କ୍ଷୟେ
ଛଡ଼ାଇ ମହାଦୁସହ ଭବ ବନ୍ଧନ ବ୍ୟଥା ହେ ।
ନାନା ଉତ୍ସବରୁଁ ସେ ଉତ୍ସବ ସାର
ଧନ ଲୋକ ଲୋକଙ୍କ ନେତ୍ରାନନ୍ଦକାର
ବରଷା ଆଗମରେ ସେ ଲୀଳା
କରନ୍ତି ଭବ ସାଗର-ଭେଲା ।
କମଳମୁଖୀ କମଳାକଣ୍ଠ ମର୍କତ ହାର । ୧ ।
ଯହିଁ ଅଷାଢ଼ ମାସ ପ୍ରବେଶ
ହୁଅନ୍ତେ ଘନ ଘୋଟି ଆକାଶ
ଗିରି ମସ୍ତକ ଶିଳ କରଇ ଗମ୍ଭୀର ଘୋଷ ହେ ।
ମେଘ ପୁଷ୍ପରେ ମେଦିନୀ ବେଶ
ଉତ୍ତାପ ନାଶି କରେ ସୁବାସ
କୃଷି କାରକ ଅଙ୍ଗ ମାନସ ହରେ ଉଲ୍ଲାସ ହେ ।
ମଣ୍ଡୁକ ମୂର୍ଚ୍ଛନ୍ତି ମଳନ ଭାବ ହେ
ମହା ଉଚ୍ଚେ ଶବଦେ କରନ୍ତି ରବ ହେ ।

ମାନ ସରକୁ ଗମନ୍ତି ହଂସେ
ମହୀରେ ଇନ୍ଦ୍ରଗୋପ ପ୍ରକାଶେ
ମାଣିକ୍ୟ ମଣ୍ଡି ହୋଇଲା ପ୍ରାୟେ ସୁନ୍ଦର ଦିଶେ ହେ । ୨ ।
ଫୁଟନ୍ତି ଗୃରୁ ଗୃମର ଫୁଲ
ଫୁଲ ବଶିଖ ଗୃମର ଭୁଲ୍ୟ
ପୂର୍ଣ୍ଣାରବିନ୍ଦମୁଖୀ ବିରହିକାଳେ ଯେ ଶଲ୍ ହେ ।
ଯେଉଁ ଋତୁରେ ଅତ୍ୟନ୍ତ ଭଲ
ହୋଉ ବଢ଼ଇ ଦମ୍ପତି ବୋଲି
ଏକାକୀ ଲୋକମାନଙ୍କୁ ହୋଏ କନ୍ଦର୍ପ ଶୂଳ ହେ ।
କାମୀ କାମିନୀ ଯହିଁ ହେଲେ ଅଭେଟ
ଭୋଗ କରନ୍ତି କାମ କୃପାଣ ଘେଟ ହେ
ଦିନେ ଅନ୍ଧାର ହୋଏ ସଘଟ
ପଥିକ ଜନେ ପଡ଼େ ସଙ୍କଟ
ଅରତ ହୋଇ ବୋଲନ୍ତି ରଖ ଚନ୍ଦ୍ରମୁକୁଟ ହେ । ୩ ।
ଅଭ୍ର ବିକଟ ଭାନୁଙ୍କ ଗତ
ଯେଉଁ କାଳରେ ହୋଏ ଉଚ୍ଛଟ
କେକୀ କେକିନୀ ମଣ୍ଡଳୀମଧେ କରନ୍ତି ନାଟ ହେ ।
ଅବାଟ ବାଟ ହୋଏ ଅବାଟ
ହୋଏ ଅଛନ୍ନ ହୋଇ କୃପୀଟ
ତଟିନୀ ଜଳ ପ୍ରବଳ ହୋଇ ବଳନ୍ତି ତଟ ହେ ।
ନାବ ଯେନ୍ନ ନାବିକେ ଜଗଇ ଉଠ ନ୍ଧେ
ପଥିକଙ୍କ ଗମନ ନୁଅଇ ମଠ ହେ ।
ସବୁ ଅଭତରେ କମଳ ମଧ୍ୟେ
ପଦ୍ମକୁମୁଦ ଅଦୃଶ୍ୟ ହୋୟେ
ଥଳକମଳ କମଳପନ୍ତି ଫୁଟ ପଡ଼ଇ । ୪ ।

ପ୍ରଭ କେଦାରେ କନ୍ଦର୍ପ-ଭୂର
ପ୍ରାପ୍ତ ଶୁଭର ଷଡ଼ଜ ସ୍ୱର
ଋଷଭ ଧଇବତ ମଧ୍ୟମ ଯେନ୍ନ ସେ ଘୋର ହେ ।
ଶୁଣି ପଥିକେ ଭୟେ ଥର୍ଥର
ଅସନ୍ତି ଯେ ଯାହାର ମନ୍ଦର
ପଷନ୍ତି ପ୍ରିୟା କଣ୍ଠକ ଭୁଜ ଗିରି କନ୍ଦର ହେ ।
ଯହିଁ ବୃକ୍ଷଲତା ନୋହେ ଅନ୍ତର ହେ
ପକ୍ଷୀ ଜୀବମାନେ କରନ୍ତି ଘର ହେ
ସକରନ୍ଦ କର୍ଦ୍ଦନ ପୁଭ
ଭୋଗ କରନ୍ତି ଭ୍ରମନର
ବିଧାତା ଛଡ଼ା ଲୋକଙ୍କ ଯହିଁ ରେଖା ଗୃର । ୫ ।
ମଲ୍ଲୀ ମାଲତୀ ଜାଞ୍ଚ କଦଳୀ
କୁଟଜ ଅଦ୍ଧ କଦମ୍ବେ କେଳ
କରନ୍ତି ଯହିଁ ସମସ୍ତେ ଭଙ୍ଗ କଦମ୍ବେ ମେଳ ହେ ।
ସ୍ଥିମାଅଧର ହାସକୁ ବଳ
ଫୁଟଇ ଯହିଁ ଗଙ୍ଗଶିଉଲୀ
ଯହିଁ ଅନଙ୍ଗବିରହୀ ଅଙ୍ଗ ଦହଇ ଜାଳ ହେ ।
ଏହି ପ୍ରକାରେ କେତେ କହିବ ଭାଳ ହେ
ପ୍ରସଙ୍ଗକୁ ସେ ଏତେ ବୋଇଲି ଛଳ ହେ ।
ପ୍ରଧାନରସ ଯିବାକୁ ଭଳ
ରଖିଲି ରଘୁବନ୍ଦନା ବଳ
ଏଣୁକରି ସେ ସମସ୍ତ ଲୋକ ସୁଖ ସଞ୍ଚାଳହେ । ୬ ।

ଏମନ୍ତ ଯେଉଁ ଅଷାଢ଼ ମାସ
ଶୁକ୍ଳ ଦ୍ୱିତୀୟା ତିଥି ଦିବସ
ପୁଷ୍ୟାନକ୍ଷତ୍ର ସହିତେ ହୋଇଥାଇ ପ୍ରବେଶ ହେ ।

ସେହି କାଳରେ ଦେବ ନରେନ୍ଦ୍ର
ମହା-କରୁଣାକର ପାଷନ୍ତ
ଅରତ୍ତ ଅଘଅନ୍ଧାର ଚନ୍ଦ୍ର ବଜେ ପ୍ରକାଶ ହେ ।

ପ୍ରାତ ମଣୋହି ସାଃଗ ବାହାର ହୋଇ ହେ
ବୀର ବେଶରେ ବୀରଛତ୍ରୀ ଧରିଇ ହେ
ବାଜଇ ବୀରବାଦ୍ୟ ଅନେକ
ଘଣ୍ଟମର୍ଦ୍ଦଳ ମେଘା ଝମକ
ଛନପୁରେ ଚମକ ଦମକ ଦର୍ଶନ ପାଇଁ ହେ । ୨ ।

ଶଙ୍ଖ ମନ୍ଦ୍ରସ୍ୱ ବୀର କାହାଲୀ
ଜୟ ଜୟ ଏକେ ହୁଲହୁଳ
ମଙ୍ଗଳ ପାଠ ମଙ୍ଗଲ ଗୀତ ନୃହର କଣ ହେ ।

ମଣିମା ଡ଼ାକ ଅନେକ ପଡ଼େ
ଅନେକ ବର୍ଣ୍ଣ ପତାକା ଉଡ଼େ
ଖଦ ଭ୍ରମର ଚଳେ ସମୁଦ୍ର ବଳ ହେ ।

ଅମ୍ବରତେ ଅଗରୁ ଧୂପହ ବାସେ
ଅକାଶରୁ ସୁବାସ ପୁଷ୍ପ ବରଷେ
ଅର୍ଦ୍ଧ ଅକାଶେ ଅମରେ ରହି
ଅତି ପୁଲକ ଅନନ୍ଦେ ଚାହିଁ
ଲହସି ପୁଜ କରନ୍ତି ଭକ୍ତି ଭାବେ ସନ୍ତୋଷେ । ୩ ।

ଏମନ୍ତେ ବିଜେ କରନ୍ତି ସ୍ମିରେ
ଶ୍ରୀଭୁଜ ଦେଇ ଭୃତ୍ୟଙ୍କ କରେ
ଅଲପ ହସି ବେନି ପାଶକୁ ଢ଼ଳ ଚାହାନ୍ତି ସେ ।
ଅମୃତ ଦୃଷ୍ଟି ପଡ଼ନ୍ତି ମାତ୍ରେ
ଉତ୍ତମାଧମ ମଧ୍ୟମ ପାତ୍ରେ
ଧର୍ମାର୍ଥ କାମ ମୋକ୍ଷ ଚତୁର ବର୍ଗ ପାଆନ୍ତି ।
କୃପାକର କରୁଣା କର ବିସ୍ତାର
କେତେ ଲୋକଙ୍କୁ କେତେ କର ନିସ୍ତାର ସେ ।
ବଳଦେବଙ୍କୁ ଆଗରେ କରି
ସିନ୍ଧୁଶ୍ରୀ ଗନ୍ତା ପାଶକୁ ଧରି
ନୀଳାଦ୍ରୀ ନବରରୁ ବାହାର ଜଗଦୀଶ୍ୱର । ୯ ।
ସ୍ନେହ ଭାବରୁ ସୁଭଦ୍ରା ସଙ୍ଗେ
ସୁଦରଶନ ବିଜୟେ ରଙ୍ଗେ
ମଦନ ଗୋପାଳଙ୍କୁ ସେ ଯେନ ବିଜୟେ ରଥ ହେ ।
ସେ କାଳେ ଯେଉଁ ଶୋଭା ସମ୍ଭବି
କାହାର କଥନୀୟ ନୁହନ୍ତି
ସେହୁ ଜାଣନ୍ତି ଯେ ଦେଖିଛନ୍ତି ନୟନ ପଥେ
କେ କହିବ ସେ ରଥ ମଣ୍ଡଣୀ ଶୋଭା ହେ
ଝଲ ଝଲ ଝଲକ ଦର୍ପଣ ପ୍ରଭା ହେ
ଚାରୁ ଚିକୁର ଚିନ୍ନୃସ୍ମ ପଠା
ପାଟ ପତକା ନେତ ପ୍ରକଟା
ଚାରୁ ଚାମର ଫୁଲମାଳରେ ନୟନ ଲୋଭା ହେ । ୧୦ ।

ସୁବର୍ଣ୍ଣ ଘଣ୍ଟି ଘାଘୃଡ଼ି ମାଳ
ବିବିଧ ମଣି ଗଣ୍ଡେ ମଣ୍ଡଳ
ରତ୍ନ କଳସ ଉପରେ ସୂର୍ଯ୍ୟ ସମାନ ଚକ୍ର ହେ ।

ନଟ ନାଗର ହସ୍ତକ ହାଥ
ପ୍ରାପ୍ତେ ବିବିଧ ଗନ୍ଧର୍ବ ସାର୍ଥ
ଶଙ୍ଖ ଭଞ୍ଜନ ନାମରୁ ନାନା ପ୍ରକାରେ ବନ୍ଧ ହେ ।

ଯେଉଁ ରଥରେ ବିଜେ ଦେବାଧିଦେବ ହେ
ତହିଁ ଶୋଭା କେ ବଚନରେ କହିବ ହେ
ଦଶ ଚଉଦ ଲୋକେ ଉପମା
ନାହିଁ ତହିଁର ସେ ସୁଖସୀମା
ନୋହିଲେ କିପାଁ ତ୍ରୈଲୋକ୍ୟ ମୋହନକୁ ବହିବ ହେ ।୧୧।

ଧନ୍ୟ ସେ ରଥ ଧନ୍ୟ ସେ ପଥ
ଯହିଁ ବିଜୟେ ଶ୍ରୀ ଜଗନ୍ନାଥ
ଧନ୍ୟ ଜନଙ୍କ ନୟନ ଧନ୍ୟ ଗୁଣ୍ଡିଚା ଠେଲ ହେ ।

ଯହିଁକି ନାନା ଦେଶରୁ ଲୋକ
ଅସଙ୍ଖ୍ୟ ହୋଇ ମହା ଉତ୍ସୁକ
ଅନୁବରତେ ଉଚ୍ଚେ ହରି ମହିମା ଡାକ ହେ ।

ଅଙ୍ଗ ବଙ୍ଗ କଳିଙ୍ଗ ମଗଧ କାଶୀ ହେ
ନଟ ଭୋଟ କର୍ଣ୍ଣାଟ ଗଉଡ ଦେଶୀ ହେ
କାମ୍ୟକ କାମରୂପ ନେପାଳ
କୋଶଳ କୁରୁକ୍ଷେତ୍ର କୁନ୍ତଳ
ହିନ୍ଦୁ ମଳୟ ଶୈଳ ପଞ୍ଚାଳ ସିଂହଳ ବାସୀ ହେ । ୧୨ ।

ସୌରାଷ୍ଟ୍ର ମହାରାଷ୍ଟ୍ର ଅବନ୍ତୀ
ଆଦି ଅନେକ ଦେଶୁ ଆସନ୍ତି
ବିବିଧ ଯାନମାନ ଆରୋହି କେ ପାଦ ଗତି ହେ ।
କେତେ ନୃପତି କେତେ ସଞ୍ଚରି
ଯେନ ଆସନ୍ତେ ନ ପାରନ୍ତି ସ୍ମୃତି
ନଦୀ ସମୁଦ୍ରେ ପଶିଲା ପ୍ରାୟେ ଯେତେ ପଶନ୍ତି ହେ ।
କେହୁ ଝାହୁ ଝମାଲ ରହସ ରଙ୍ଗେ ହେ
କେହୁ କ୍ରୀଡ଼ା କରନ୍ତି ବିବିଧ ରଙ୍ଗେ ହେ
ଯୁବା ଯୁବତୀ ଯତି ସନ୍ନ୍ୟାସୀ
ସାଧୁ ଦୁର୍ଜନ ପଣ୍ଡିତେ ମିଶି
ବୈର ସାଧବ ଅଗୃହ ଲୋକ ଚଣ୍ଡାଳ ସଙ୍ଗେ ହେ । ୧୩ ।

ଏ ରୂପେ ନାନା ମାର୍ଗେ ଆସନ୍ତେ
ଠାବେ ଠାବେ କେ ରହନ୍ତି ରାତ୍ରେ
କେଉଁ ଯୁବତୀ ବୋଲନ୍ତି କାନ୍ତେ କେଉଁଠାରେ ଗୃହଁ ହେ ।
ଯିବାକୁ ମୋର ଶକତି ନାହିଁ
ଅଗରେ ଦଣ୍ଡେ ଯିବାଟି ରହୁ
ଶୁଣି ନାୟକ ବୋଲଇ ହେଉ ଜୀବନସହୁ ରେ ।
କେଉଁ ଯୁବତୀ ଅତି ନିତମ୍ବବନ୍ତୀ
କାନ୍ତକର ଧରି ସଖୀରେ କରନ୍ତି ଗତି ହେ ।
ବୋଲଇ କେତେ ଦୂରରେ ଯୋଜ
କାହିଁ ହେ ବେନି କମଳ ନେତ୍ର
ଦେଖାଇ ଅପି ବୋଲନ୍ତେ ହୋଏ ହରଷ ମତି ହେ । ୧୪ ।

ସପ୍ରେମ ଭରେ କାନ୍ତଙ୍କୁ ଗୃହିଁ
କହୁଁ ସୁନ୍ଦରୀ ବୋଲଇ ରହି
ଚାଲିବାକୁ ତ ଚରଣ ମୋର ଚଳଇ ନାହିଁ ହେ ।
ଏଠାରୁ ମୋତେ ନେବ ତ ବହି
ଶୁଣି ନାୟକ ବୋଲଇ କହି
ନ ନେଲେ କହୁଁ ଚଳି ଏ କଥା କମଳମୁହିଁରେ ।
ଶ୍ରମଭରରୁ ଇଷି କେ ଭାଷି
ନାସା ଢୋକ ପାଦ ତଳରେ ବସି
ଝଲକ ଚନ୍ଦ୍ର ମୁଖ ହସାଇ
ହସି କାନ୍ତଙ୍କୁ କହେ ଗେଲାଇ
ମହାପ୍ରଭୁଙ୍କ ଯାହାଫଳହିଁ ହଟିଲା ଅସି ହେ । ୧୫ ।

ଶୁଣି ଦୟିତ ବୋଲେ ଏ ସତ୍ୟ
କହିଲ ଯେଉଁ କଥା ଉଚିତ
କ୍ଳେଶ ନୋହିଲେ କ୍ଳେଶ ନୁହଇ ଫଳ ପାଇବା ଗୋ
ସୁମନା ହୋଇ ବମନା ହେଲେ
ଅସୁରଙ୍କୁ ହଣଇ ଭଲେ
ତୁମ୍ଭେ ବିବେକୀ ତହିଁ ଅଧିକ କେତେକହିବା ଗୋ
ଏହା ଶୁଣି ହସିଲା ହରିଣଦୃଶା
ହାଥେ ହାଥ ମାରି କଲା ପ୍ରଶଂସା ସେ
ପୁରୁଷୋତ୍ତମ କଥାକୁ ଛଳ
କହିଥିଲଟି ପଡ଼ିଲା ବଳ
ନୋହିଲେ ମୋର ତୁମ୍ଭକୁ ହେଲା ଏହି ସମସ୍ୟା ହେ ।୧୬।

ପ୍ରେମ ଛଳରେ ଯେଉଁ ବଚନ
ନ କହ କହିଲେ ହେ ମିଥୁନ
ବସ୍ତୁର ବୁଝି ଭାବିଲେ ଏ କଥାହିଁ ସେ କଥା ହେ
ତାହା କେତେ ହେ କହିବ ବସି
ଯେ କାମ ସିନ୍ଧୁ ଲହରୀ ରାଶି
କହି ବଦିଲେ ସହଯେ ସେ ତ ହୋଇବ ପୋଥା ହେ ।
କଉଁ ଯୁବତୀ ଧର କାନ୍ତ ପଣତ
ମନେ ଦେନ ସେ ଏହି କଥା ସତ୍ୟ ହେ
ଏଡ଼େ ଗୁଣ୍ଡିଙ୍କୁ ଯାହେ ଅତ୍ୟନ୍ତ
ପ୍ରିୟ ବାଦନୀ ପୁଗୁଣବନ୍ତ
ପ୍ରିୟାଙ୍କୁ ଛାଡ଼ି ବନେ କରନ୍ତି କମଳାକାନ୍ତ ହେ । ୧୭ ।

କଉଁ ନାଗରୀ ମଦନ ମତ୍ତେ
ନାଗର ଅଙ୍ଗେ କହେ ଉଦ୍ଧତେ
ଯେମନ୍ତ ହୋଇ ଅଛଲ ବନ ଭ୍ରମର ସୁଖେ ହେ
ଆଜ ରାସରେ ରହିଲେ ଏକା
ପାଆନ୍ତି ହିନା ଅନେକ ଦକା
ଭ୍ରମ ସକାଶୁଁ ମୁହିଁ ମରନ୍ତି ସନ୍ତାପ ଦୁଃଖେ ହେ ।
ଯାହା କାଲେ ନାଟଙ୍କୁ ଛାଡ଼ିଲେ ନାହା
ଅଉ ଅଛୁ ତ କେହି ହେବାକୁ ସାହା
ଆଗବେଳେ ତ ହୁଦ ଭ୍ରମର
ହୋଇ ନଥିଲ ଏଡ଼େ ନିଷ୍ଠୁର
ଏବେ ହେ ଦେବରାଜଙ୍କଠାରୁ ଶିଖିଲ ଏହା ହେ । ୧୮ ।

ନର ହୃଦୟର ଗନ୍ଧର୍ବ-ସତ୍ତ୍ୱା
ଆଦ୍ୟ ବିବିଧ ଜାତି ବନିତା
ଦ୍ୱାବ ଭାବାଦ୍ୟ ବିବିଧ ଅଳଙ୍କାର ଦେଖାଇ ହେ ।
ଅସନ୍ତ୍ରେ ସୁଖେ ଭେଦ କରନ୍ତୁ
ପଞ୍ଚବିଶିଖ ପଞ୍ଚଶରକୁ
କାର୍ମୁକ ପଞ୍ଚଜନମାନଙ୍କୁ ଅଙ୍ଗେ ରଖାଇ ହେ ।
ଜଗବନ୍ଧୁ ଦର୍ଶନେ ସବୁ ଛଡ଼ାନ୍ତି ସେ
ପରମାନନ୍ଦ ସୁଖ ଭାବେ ଭଜନ୍ତି ସେ
ଜୟ ଜୟ ଶ୍ରୀ ଜଗନ୍ନାଥ
ଜୟ ଜୟ ଶ୍ରୀ ଲାଙ୍ଗଲ ହସ୍ତ
ଜୟ ସୁଭଦ୍ରା ବୋଲି ମସ୍ତକେ କର ଯୋଡ଼ନ୍ତି । ୧୯ ।
ଜୟ କମଳପତ୍ରଲୋଚନ
ଜୟ କଳୁଷ କଷ୍ଟ ମୋଚନ
ଜୟ କମଳାମୁଖକମଳ ମତ୍ତ ଭ୍ରମର ହେ
ଜମ୍ବୁ କଟକ ନାଗର ବର
କୃପା ସମୁଦ୍ର କୈବଲ୍ୟ ଜର
କଉସ୍ତୁଭ ଯେ କଉମୁଦ ଙ୍କ ରଥାଙ୍ଗ ଧର ହେ ।
ପ୍ରଭୁ କୋଟି ବ୍ରହ୍ମାଣ୍ଡପତି ପାଳକ
ପଞ୍ଚ ଜନକ ଦ୍ୱାର ପଦ୍ମ ଧାରକ
ପଞ୍ଚ ଜନଙ୍କ ପାଶଜାତକ
ପରମାନନ୍ଦ ସୁଖଦାୟକ
ଜୟ ଜୟ ଶ୍ରୀ ଗୁଣ୍ଡିଚା କଉତୁକୀ ନାୟକ । ୨୦ ।

ଏହି ପ୍ରକାରେ କେ କେତେ ସ୍ତୁତି
କରି ଦର୍ଶନ ସୁଖେ କରନ୍ତି
କଳି କଳୁଷ ସନ୍ତାପକୁ ସଘାତ କରନ୍ତି ।
କଦମ୍ବ ଫୁଲ ପ୍ରାୟକ ଅଙ୍ଗ
ହର୍ଷେ ପୁଲକ ହେବାରୁ ସଙ୍ଗ
ଝର ସମାନ ନେତ୍ରୁ ଆନନ୍ଦ ଅଶ୍ରୁ ଝରନ୍ତି ।
ଭକ୍ତି ଭାବରେ କେହିଁ ଭଜନ୍ତି ଗାବନ୍ତି ହେ
ଭାବେ ଭଙ୍ଗିମା ହୋଇ କେହୁ ନାଚନ୍ତି
ଘଡ଼ି ଘଡ଼ିରୁ ବାହାର ହୋଇ
ଭବ ଭୟକୁ ଦୂରେ ପକାଇ
କେ ଭକ୍ତବନ୍ଧୁ କରୁଣାସିନ୍ଧୁ ଶୋଭା ଭାବନ୍ତି ହେ । ୨୧ ।

ଏହି ପ୍ରକାରେ କେ କେତେଠାରେ
ନାନା ଭାବରେ ଦର୍ଶନ କରେ
କେ ଦଣ୍ଡବତ କେ ପରିକ୍ରମା କରନ୍ତି ତହିଁ ହେ ।
କେହୁ ନ ଚଳେ ରହି ନିଷ୍ଟଳେ
ନେତ୍ର ନିବେଶି ମୁଖକମଳେ
ଅପଲକରେ ଚିତ୍ର ପ୍ରତିମା ପରାୟେ ରହି ହେ ।
ଅତି ବଳେ କେ ପଶି ମହାଗହଳେ ହେ ।
ରଥ ଛୁଇଁ ବିଶ୍ରାମ କରନ୍ତି ଚଳେ ହେ ।
ମହାପାତକୀ ପାତକ ନାଶି
ମହା ଆନନ୍ଦ ସୁଖରେ ତୋଷି
ହୋଇ ପରମ ପଦ ପଦବୀ ପାଇଣ ଚଳେ ହେ । ୨୨ ।

କେ ନିଜ ପ୍ରାଣପ୍ରେୟସୀଙ୍କୁ ସଙ୍ଗେ
ଘେନି ଦର୍ଶନ କରନ୍ତେ ରଙ୍ଗେ
କର ନିବେଶି ଉତ୍ତମ ଅଙ୍ଗେ ବୋଲଇ କାନ୍ତ ହେ ।
କେ ବଳଭଦ୍ର କେ ଜଗନ୍ନାଥ
କେ ସୁଭଦ୍ରା ମୋତେ କହ ହେ ନାଥ
କାହାର କଉଁ ରଥ କେ କଉଁ ଚଢ଼ି ବହନ୍ତି ହେ ।
ଏହା ଶୁଣି ନାୟକ ବୋଲଇ ସଖି ରେ
ଏହି ସଲଖେ ଶୁଦ୍ଧା ଶୁଦ୍ଧା ସୁମୁଖି ରେ
ଅଛି ବିପୁଳ ପ୍ରଲମ୍ବ ହାଥ
ଦେବରାଜ ଏ ଶ୍ରୀଜଗନ୍ନାଥ
ଫୁଲ୍ଲ ପଦ୍ମପ୍ରାୟ ବିସ୍ତାର ଯାହାର ଅକ୍ଷି ରେ । ୧୩ ।
ମର୍କତମଣି-ଦର୍ପଣ-ଜିଣି
ଶ୍ରୀମୁଖ ଦେଖ ରମଣୀ ମଣି
ମକରାକୃତି ମଣି କୁଣ୍ଡଳ ଝଟକେ ଗଣ୍ଡେ ଗୋ
ଶିରେ ସପତ୍ର ଶାଖା ମୁକୁଟ
ହୀର କେଦାର ସଙ୍ଗେ ସୁଘଟ
ବିଲୋକନେ ଅଶେଷ କଷ୍ଟ ସନ୍ତାପ ଖଣ୍ଡେ ଗୋ ।
ଦେଖ ଦେଖ ସୁରଙ୍ଗ ଅଧର ଛବି ଗୋ
ଛର କରଇ ବିମ୍ବଧୂଳି ରବି ଗୋ
ଅମୂଲ୍ୟ ରତ୍ନପଦକମାଳି
ବିରାଜିବାରୁ ଶ୍ରୀ-ବକ୍ଷସ୍ଥଳ
ନଡ଼ି ଗ୍ରୀବକୁ ଲଜ୍ଜିଲେ ବଡ଼ ବିବେକ କବି ଗୋ । ୧୪ ।

ବଡ଼ ରସିକ ନାଗରବର
ନାଗର ନାରୀ ଧଇର୍ଯ୍ୟ ହର
ଶ୍ରୀ ନନ୍ଦଘୋଷରଥ ରଥୀ ଏ ରଥାଙ୍ଗଧର ଗୋ ।
ଏହାଙ୍କୁ ଏବେ ଦର୍ଶନ କର
ହୋଇ୍ ଅଶେଷ ଦୁରିତ ହର
ଶୁଣି ସୁନନ୍ଦା ଶିରେ ସ୍ୱୀରେ ଯୋଡ଼ିଲା କର ସେ ।
ପୁଣି ନେଇ ଦେଖାଇ ଶିରପାଣିଙ୍କ ସେ
ମହାପ୍ରବଳ ମତ୍ତ ସିଂହଠାଣିଙ୍କି ସେ
ଶରଦପର୍ବ ଶର୍ବସ୍ୱପଣ
ଟର୍ବ ଗଣ୍ଡାଇ ଶ୍ରୀମୁଖ ଜ୍ୟୋତି
ବଳଭଦ୍ର ଏ ରେବତୀ–ପ୍ରାଣମଣିର ମଣି ଗୋ । ୧୫ ।

କୁନ୍ଦ କୁମୁଦ–ଚନ୍ଦ୍ରମା କର
ଚନ୍ଦ୍ରମାକର କମ୍ବୁ ଗୋକ୍ଷୀର
ହାର ତୁଷାର ହଣ୍ଡୀର ଛବି କରେ ଶ୍ରୀଅଙ୍ଗ ଗୋ ।
ବରୁଣସୁତା ପ୍ରିୟ ଏ ଯନ୍ତୁଂ
ଅରୁଣନେତ୍ର ଅରୁଣ ତନ୍ତୁଂ
ଅରୁଣ ମହା ଅରୁଣ ପଦ୍ମପ୍ରାୟ ସ୍ୱରଙ୍ଗ ଗୋ ।
ଶିରେ ସପତ ଫଣିମଣି ବରାଜେ ଗୋ
ଶିବ ବ୍ରହ୍ମା ସହିତେ ଏହାଙ୍କୁ ଭଜେ ଗୋ
ଅନନ୍ତ ଏହାଙ୍କର ମହିମା
ଅଶେଷ କୋଟି ବ୍ରହ୍ମାଣ୍ଡ ସୀମା
ନ କର ଅକଳନା ବହନ୍ତ ଆପଣା ତେଜେ ଗୋ । ୧୬ ।

ଦେଖ ସୁଭଦ୍ରା ଭଦ୍ରଦାୟିନୀ
ଭୃତ୍ୟବତ୍ସଳା ଭୟଭଞ୍ଜନୀ
ଦିଶିଲା ହେମ ଶତଦଳକୁ ଦିଶେ ଶ୍ରୀମୁଖ ଗୋ ।

ଅବଲୋକନ କରିବା ମାତ୍ରେ
ଅଶେଷ ଦୁଖ ନ ରହେ ଗାତ୍ରେ
ପରମାନନ୍ଦ ସେହି ବଦନରୁ ପରମ ସୁଖ ଗୋ ।
କର କର ଦର୍ଶନ ସୁଦରଶନ ଗୋ
କୋଟି କୋଟି ତପନ କରେ ଶୋଭନ ଗୋ ।
ଏମନ୍ତ ଯହି ଅନୁରାଗେ
ଆନନ୍ଦ ଅଶ୍ରୁ ପୁଲକ ଯୋଗେ
ବୋଲେ ଶ୍ରୀ ନନ୍ଦୀଘୋଷ ଏ ଯହିଁ ଗରୁଡ଼ ଚିହ୍ନ ଗୋ ॥

ତାଳଧ୍ୱଜରେ ବଡ଼ଠାକୁରେ
ଦେବୀ ବିଜୟେ ପଦ୍ମ ଅଙ୍କରେ
ପତିତଜନମାନଙ୍କୁ ଉଦ୍ଧାରିବା କୃପାରେ ସେ ।

ପାରିଜାତକ କୁସୁମ ଚିରେ
ବରଷି ସ୍ତୁତି କରନ୍ତି ସୁରେ
ଏହି ସମୟେ ଜଣାଇ ଦୀନକୃଷ୍ଣ ଛାମୁରେ ହେ
ଅହେ ଅଘଭଞ୍ଜନ କମଳାନାଥ ହେ

କୃପାସମୁଦ୍ର ଦୀନଜନଙ୍କ ସାହା
ବହିଥିଲେ ମୁଁ ତୁମ୍ଭ ଶରଣ
ରଖ ପ୍ରଭୁ ତାହା ସୁଜାଣ
ଜଣାଉଛି ଅଭାବ ସେ ମୋତେ କରିବେ ଅହା ହେ ॥

ଅଜାତପତ୍ର ପକ୍ଷିବ ରଥ
ପୋତ ପ୍ରାୟ କୃତ ବ୍ୟର୍ଥ
ନବାତ ପୋତ ପ୍ରାୟ ପ୍ରଭୁ ନାହିଁ ମୋ ଗତି ହେ
କେବଳ ଏହି ଅଭିମାନହିଁ
ମନେ ଘେନନ୍ତୁ ହେ ଭାବଗ୍ରାହି
ତୁମ୍ଭେ କରୁଣା ବରୁଣାଳୟ ଅଗତି ଗତି ହେ ।
ଆଶା ବିଶ୍ୱାସ ନାମୁଁ ଯେତେ ଭରସା ହେ
ତାହା କହିବି କେତେ କେତେ ମୋ ଭାଷା
ଅନ୍ତରଯାମୀ ପ୍ରଭୁ ତ ଜାଣ
ଜାଣିବେ ଦଶା ଯେହ୍ନେ ଏତେକ
ଘଣସ୍ୟ ଏବେ ଏ ରଥଯାତ୍ରା ଉତ୍ସବ ହେଉ ସୁଦଶା ହେ ॥

ଅହେ ବାରଣ ଭୟ ବାରଣ
ବାରେ ହେ ମୋତେ କର ତାରଣ
ଅଧମ ଉଦ୍ଧାରଣ ପ୍ରଭୁ ଭକତ ବତ୍ସଳ ହେ
ବରୁଣ ସୁତା ହୃଦଭୂଷଣ
ଅରୁଣ-ପ୍ରଭା ଛବି ଦୂଷଣ
ତରୁଣ କାଳ ଲୀଳାଖେଳା ସୁନ୍ଦର ଅଖିଳ ହେ
ପ୍ରଭୁ ନାହିଁ ମୋହର କିଛିହିଁ ଦୃଢ଼
ବିଗୃଣଲେ ମୁଁ ସବୁ ପ୍ରକାରେ ମୂଢ଼
ମହା ଘୋର ଏ ସଂସାର ସିନ୍ଧୁ
ଏଥୁ ଉଦ୍ଧାର ହେ ଦୀନବନ୍ଧୁ
ଉପେନ୍ଦ୍ର ଇନ୍ଦୁବଦନ ଯେ ନନ୍ଦଘୋଷ ଆରୂଢ଼ ହେ । ୩୦ ।

## ଦଶମ ଛାନ୍ଦ

### ଗୁଣ୍ଡିଚ୍ଛ ବର୍ଣ୍ଣନା

( ରାଗ ବଙ୍ଗଳାଶ୍ରୀ )

ଏଥୁ ଅନ୍ତେ ଜଗନ୍ନାଥ ଦେବରାଜ ରଥଗଜ ଅଶ୍ୱନର ।
ଅତି ସମ୍ଭ୍ରମରେ ଆନନ୍ଦ ଭର ହୋଇଲେ ସର୍ବ ଅନୁସାର । ୧ ।

ଆଗେ ଜଗନ୍ନାଥ ପଛେ ବଳଭଦ୍ର ସାନ୍ଦ୍ର ମଧ୍ୟରେ ଦେଖି
ଛାଦ ଚାମର ଆଲଟ ପଂଖା ଧରି ପାଶେ ଲୋକେ ଛନ୍ତି ସେବି । ୨ ।

ଘଣ୍ଟ ମର୍ଦ୍ଦଳ ମହୁରୀ ଶଙ୍ଖଭେରୀ ଦୋସରୀ କାହାଳୀ ବାଜେ
ଦରଦ୍ର ପଞ୍ଚତ ଗଣ ଚାଟବାକୁ ନୀଳଗିରି ନାଥ ବଜେ । ୩ ।

ମଣିମା ମଣିମା ଡାକ ବ ସୃଷ୍ଟିର ଗୋମୁଖ ଘଣ୍ଟ ଅପ୍ରମେୟେ
ଜୟ ଜୟ ଗୋଲ ଅଛନ୍ତି ପ୍ରବଳ ସମୁଦ୍ର ମନ୍ଥନ ପ୍ରାୟେ । ୪ ।

ଅଗରୁ ଧୂପ ଅନ୍ତରେ ପ୍ରକଟ ହୁଅଇ କୁସୁମ ବୃଷ୍ଟି
ଆଗେ ଅପସରୀ ନୃତ୍ୟ ଗୀତ କରି ପ୍ରକାଶନ୍ତି ସୁଖ ସୃଷ୍ଟି । ୫ ।

ଚନ୍ଦ୍ରବଦନୀ ଗଜଇନ୍ଦ୍ରଗମନୀ ଶିଶୁପାଣ୍ଡନ୍ତମଧ୍ୟମା
ମନ୍ଦହାସିନୀ ମରୁପିକଭାଷିଣୀ ସୁକୁନ୍ଦଦଶନୀ ରାମା । ୬ ।

ନୀଳକୁନ୍ତଳ କୁନ୍ତଳେ କମନୀୟେ ଭିଡ଼ିଛୁ ଲୋଟଣୀ ଜୁଡ଼ା
ଶରୀମୂଳେ ଖୋସି କେତକୀ ପାଖୁଡ଼ା କରିଅଛୁ ଘରଚୂଡ଼ା । ୭ ।

ବାହାବେଣୀ କାମ ଗୁପତି ଚଳଚଳେ ପାଉଅଛୁ ଦିବ୍ୟଶୋଭା
ଝିଲିମିଲି ଚନ୍ଦ୍ର ଝୁମ୍ପା ଝଲକରେ ନାଗର ନୟନ ଲୋଭା । ୮ ।

ଭୁରୁଭଙ୍ଗିମା ନୟନ ତରଙ୍ଗିମା କରି ହସ୍ତକ ଦେଖାନ୍ତି
ତାଳ ମାନ ଭାନ୍ତେ ହୃଦୟ ସଙ୍ଗରେ ସୁଖ ସମ୍ପଦ ରଖନ୍ତି । ୯ ।

ରସବନ୍ତୀ ଗୁଣବନ୍ତୀ ଭାବବନ୍ତୀ କୃତମ୍ଭବନ୍ତୀ ମଣ୍ଡଳୀ
ନାନାରଙ୍ଗରେ ନାନାରଙ୍ଗ କରନ୍ତି ଝୁଲ ଅଙ୍ଗମାନ ଗଳି । ୧୦ ।
ବଡ଼ କବ-ଦା ଜଡ଼ିତାଙ୍କୁ ପାଇବେ ମୁଁ କେତେ କହିବ ତାହା
ଉର୍ଦ୍ଧ୍ୱରେଖା ମାନେ ଅଧରେଖା ହେବେ ଅନାଇଁମା ମାନ୍ଦ୍ରେ ଯାହା ॥
କାମ କରବାଲ - ଘାତର ପ୍ରବଳ ଅଲପଦ୍ୱପ କଟାକ୍ଷ
କେ ସହନ୍ତା ଯେବେ ନ ଥାନ୍ତା ପ୍ରଭୁଙ୍କ ଦରଶନ ସେନା ପକ୍ଷ ॥
ନଗ୍ରବାସୀ ମାନେ ବାହାର ହୋଇଲେ ଦର୍ଶନ କରିବା ଆଶେ
ଅବଧ ବନ୍ଧ ଲେପଣ କ୍ଷେପଣ ନାନା ଅଲଙ୍କାର ବେଶେ । ୧୩ ।
ସିତ ପୀତ ନୀଳ ଲୋହିତ ବସନ ପରିଧାନ କରି ଅଙ୍ଗେ
ପନ୍ତ ପନ୍ତ ହୋଇ ଗମନ୍ତି ସୁନ୍ଦରୀ ସୁତ ପତି ସେନ ସଙ୍ଗେ । ୧୪ ।
ଏମନ୍ତ ପଥରେ ରଥରେ ଦେଖନ୍ତି ଜଗନ୍ନାଥ ଦେବରାଜ
ଆନନ୍ଦଭରେ ନିୟୁଛନ କରନ୍ତି ଅଙ୍ଗ ଆଭରଣ ଲାଜ । ୧୫ ।
ନୟନ କମଳ ନୀଳୋତ୍ପଳମାନ ମଣ୍ଡି ପ୍ରଭୁଙ୍କ ଶ୍ରୀଅଙ୍ଗେ
ଆନନ୍ଦ ଅଶ୍ରୁ ପୁଲକ ଭରେ ସ୍ତୁତି କରନ୍ତି ବିବିଧ ରଙ୍ଗେ । ୧୬ ।
ଅହେ ଅମୃତ ଦାମ୍ନା ସୁଖଦାୟକ ଅନନ୍ତଅଙ୍କବିହାରୀ
ଆପଣା ଉତ୍ସବ ଉଦୟ କାଳରେ ଚଞ୍ଚଳା ଅନ୍ତର କରି । ୧୭
ଅଲପ ହସି ଶିରେ କର ନବେଶି ଜଣାଏ କେଉଁ ନାୟିକା
ଏଡ଼େ ବରଷା ସମୟେ ପ୍ରଭୁମାଙ୍କୁ ନିର୍ଦ୍ଦୟେ କରନ୍ତି ଏକା । ୧୮ ।
ଛାହାପୁରେ ଥିବେ ଦେଉଳେ ନ ଥିବେ ଗୃହିଁଲେ ଆସନ୍ତେ କାହିଁ ।
କେ ବୋଲେ ନକଲେ ନଚଳଇ କାର୍ଯ୍ୟ ଜଗତ ପାଳଇ ଯେହୁ ॥
କେ ବୋଲେ ଯେହାଙ୍କ କୋହେତ ଅଦ୍ଭୁତ ଠାକୁରାଣୀଙ୍କର ଦୋଷ
ବାହୁପାଶେ ବନ୍ଦୀ କରିରଖିଥିଲେ ଏହାଙ୍କୁ କରନ୍ତେ ବଶ । ୨୦ ।

ସହଜେ ଦୀନବନ୍ଧୁ ନାମ ପ୍ରକାଶ ହୋଇଛନ୍ତି ତ୍ରିଲୋକରେ
ଏବେ ହେ ଅନାଥଚନ୍ଦ୍ର-ଅରବିନ୍ଦ ପ୍ରକାଶି ଅଛନ୍ତି କରେ । ୨୧ ।

ଅମୃତ ଆହାର ସବୁ ଲୋକଙ୍କର ନୟନର ଅଳଙ୍କାର
ମହାଆନନ୍ଦରେ ଘନରସରେ କମଳା କରେ ବିହାର । ୨୨ ।

ଅଶେଷସୃଷ୍ଟି ଯାକ ପ୍ରତିପାଳନ୍ତି ଅନନ୍ତ କୋଳରେ ଥାଇ
ଯହିଁରଥପତି କଶ୍ୟପ ନନ୍ଦନ ଏହାଙ୍କ ରଥେ ବସଇ । ୨୩ ।

ଅତି ଅହ୍ଲାଦ କରନ୍ତୁ ସଖୀପ୍ରେ ଅମୃତକର ଚନ୍ଦ୍ରମା
ତାରକାମଣ୍ଡନ ତମ ବିଖଣ୍ଡନ କମଳାଙ୍କ ସୁଖସୀମା । ୨୪ ।

ସଖୀପ୍ରେ ବିଧୁ ନନ୍ଦିଘୋଷେ ଉଦୟେ ଯେବେ କୃଷ୍ଣେ ଉଦୟେ
ଆଉ ନନ୍ଦ ନାଶ ହୁଅନ୍ତି ଅଶେଷ ଅଘ ଅନ୍ଧକାରଚୟେ । ୨୫ ।

ହୃଦୟ ଚନ୍ଦ୍ରକାନ୍ତ ତ କେ ଏମନ୍ତ କରି ହରଷ କରନ୍ତି
କର କମଳ କାହିଁକି ପାଇଁ ଅତି ମୁଦ୍ରିତ ଦଶା ଧରନ୍ତି

ଶୋକ ରଥାଙ୍ଗ ଅଙ୍ଗ ସଙ୍ଗ ଛଡ଼ାନ୍ତି ନାହିଁରେ ପ୍ରାଣ ସଜନୀ
ଏତିକ କହିବାକୁ ହେତୁ ହୋଇଲା ଚନ୍ଦ୍ର ଗୁଣ୍ଡିଚା ରଜନୀ । ୨୮ ।

ତନୁ ଶୀତଳାନ୍ତ ଉତ୍ଫୁଲ୍ଲ ସ୍ତବକ ପ୍ରେ ଦର୍ଶନ ବାହାରେ
ଏମନ୍ତ କହି କଲାପ ତୋଷ ହୋଏ ପୁରାଙ୍ଗନା ଯେ ଯାହାରେ । ୨୯ ।

କେ ବୋଲେ ଆଷାଢ଼ ମାସ ପରବେଶ ଜାଣି ଶ୍ୟାମ ଘନାଘନ
ଜଗତ ତାପ ଖଣ୍ଡିବାକୁ ମଣ୍ଡିଲେ ଶ୍ରୀନନ୍ଦିଘୋଷ ଗଗନ । ୩୦ ।

ଅମୃତ ବୃଷ୍ଟି କରି ସୃଷ୍ଟିଯାକ ଏ ରକ୍ଷା କରିବେ ଗୋ ସଖୀ
ସୁଖୀ ହୋଇ ନୃତ୍ୟ କରନ୍ତି ଦେଖତ ନୃତ୍ୟ କରିବାର ଶିଖୀ । ୩୧ ।

ଘନେ ବିଳସନ୍ତି ଚପଳାର କାନ୍ତି ହରିତ ଅମ୍ବର ଶୋଭା
ଦମ୍ଭିଣୀ-ରଙ୍ଗିଣୀ ଚନ୍ଦ୍ରାମାଳ ଶ୍ରେଣୀ ଇନ୍ଦ୍ରଶରାସନ ପ୍ରଭା । ୩୨ ।

ମହା ସମୃରେ ନନ୍ଦଘୋଷ ଅମ୍ବରେ ଯେଣୁ ଏ ଘନ ଘୋଟିଲା
ସ୍ବଛ ଅଙ୍ଗେ ଦେଖ ପୁଲକ କଦମ୍ବ କଦମ୍ବ ଭେଣ୍ଟୁ ଫୁଟିଲା । ୩୩ ।

ଭଙ୍ଗ ବସନୀ ଇନ୍ଦ୍ରଗୋପ ଅବନୀ ଭେଦ କରିବାକୁ ଏହୁ
କେବଳ ଏକା କଥା ଏମାନ ଏଥି ନ ଦେଖି ହେଲି ଗୋ ସହୁ ॥

ଏଡ଼େ ମେଘ କୋଳେ ଚଞ୍ଚଳା ନ ଖେଳେ ଏହୁ କଥା ଅଚମ୍ଭିତ
କେ ବୋଲେ କ୍ଷୀରେ ଘୃତ ଥିଲା ପରାଏ ହୋଇ ଥିବେ ଅନ୍ତର୍ଗତ ॥

ଶୃଙ୍ଗରେ ସ୍ୱର ଡମ୍ବୁରେ ଚନ୍ଦ କର ଅଙ୍ଗରେ ଯେମନ୍ତ ଛଇ
ବନା ହେଉଛିରେ ଏ ପ୍ରକାଶ ନୃହନ୍ତି ଯେ ଯାହା ସ୍ଥାନରେ ଥାଇ ।୩୬।

ଚନ୍ଦ୍ରଙ୍କୁ ଯାମିନୀ କାନ୍ତଙ୍କୁ କାମିନୀ କାମିନୀଙ୍କ କାନ୍ତ କାନ୍ତ
ଅଙ୍ଗଙ୍କୁ ଭୂଷଣ ଭୂଷଣଙ୍କୁ ଅଙ୍ଗ ପରସ୍ପରେ ଏ ଶ୍ରୀବନ୍ତ । ୩୭ ।

ଏହାଙ୍କର ଅଙ୍ଗ ଯାବତ ତାହାଙ୍କର ନାମରେ ହୋଇଛି ଛଇ
ଅଣୁ ଅନ୍ତର୍ଗତ ହେଲେହେଁ ଯେମନ୍ତ ରସନା ଶୋଭା କରଇ । ୩୮ ।

ଆଗ ତାଙ୍କ ନାମ ଥିଲେ ଅଭିରାମ ଶୁଭଇ ଏହାଙ୍କ ନାମ
ଏହୁ ହେତୁ ଏହାଙ୍କର ସେ ମଣ୍ଡନ ଏ ତାହାଙ୍କ ସୁଖଧାମ । ୩୯ ।

ଏକ ଆରକେ ଏମନ୍ତ କହୁଁ କହୁଁ ଚଳନ୍ତି ଯେ ପଦ୍ମଅକ୍ଷି
ଚଳନ୍ତି ଛନ୍ଦଁକ କରୁଁ ମଣ୍ଡବଣ ହୋଇବାରୁ ଲୋକେ ସୁଖୀ । ୪୦ ।

କେ ବୋଲେ ସଖି ପ୍ରରୂପଣ ଲକ୍ଷଣ ଏହୁଠାରେ ଅଛି ଦେଖ
ବେନଭାଇ ଏକାବେଳେ ଚଳୁଥିଲେ ପାଉଥାନ୍ତି ଲୋକେ ସୁଖ ।୪୧।

ଧନ୍ୟ ଧନ୍ୟ ଘନସାର ଅଙ୍ଗ ଧନ୍ୟ ବରୁଣ-ନନ୍ଦନୀପ୍ରିୟ
ଭଲା ଭଲା ଘନସାର ତନୁ ଭଲା ବରୁଣନନ୍ଦନୀପ୍ରିୟ । ୪୨ ।

ଏକ ବୋଲେ ସଖି ଏ ଯାତ ସାକ୍ଷାତ ସ୍ୱର୍ଗପୁର ପ୍ରାୟ ଦଶେ
ଦେଖ ଚନ୍ଦରଥ ଗନ୍ଧର୍ବଗାୟକ ଗାଏ ଦେବରାଜ ପାଶେ । ୪୩ ।

ବ୍ରହ୍ମାଦି ଦେବତା ମାନେ ପହୁଅଛନ୍ତି ଅଛନ୍ତି ଶ୍ରୀପାଶରେ
ସ୍ତୁତିଚନ୍ଦନ ବନ୍ଦନା ଭୋଗକରି ସେବା କରନ୍ତି ତୋଷରେ । ୪୪ ।
କେ ବୋଲେ ସଖି ଯାହା ଚିହ୍ନ ପ୍ରାୟେକ ପ୍ରତେ ଦେଉଅଛ ମୋତେ
ଅବିଶ୍ରାମ ହୋଇ ଶ୍ରମଜଳଦଶା କଦମ୍ବ ଦିଶୁଛି ମୋତେ । ୪୫ ।
ଦିବ୍ୟ ଗଜର ମଗର ଅଶ୍ୱ ଶିଶୁମାର ଅଛନ୍ତି ଏଥି ବନ୍ଧୁତ
କୋଳାହଳେ ମହାଗର୍ଜନ ଏହାର ମୁହୂର୍ତ୍ତେ ରହୁନାହିଁତ । ୪୬ ।
ରଥ ବୋଇତ ମାନେ ଏଥି ସଧୀରେ ଚଳନ୍ତି କେମନ୍ତ ହୋଇ
ଯାଠ ପତକା ନେତ ନାନା ଅମ୍ବର ଅତୁଳ୍ୟ ଭାବକୁ ପାଇ । ୪୭ ।
ମହା ସାଧବ ପରାଏ ମାଧବ ମହା ଶୋଭିବନ ଦିଶେ
ମହାସମୁଦ୍ରରେ ଭକ୍ତବର୍ଗ ଘେନାଛ ଶ୍ୱେତଦ୍ୱୀପରୁ ଏ ଆସେ । ୪୮ ।
ଭାଇ ବଳଭଦ୍ର ସୁଭଦ୍ରା ବହୁଣୀ ଅସି ଅଛନ୍ତି ଏ ସାଙ୍ଗେ
ଅତି ମନୋହର ଅଳଙ୍କାର ଦେଖ ମଣ୍ଡି ଏ ଅଛନ୍ତି ଅଙ୍ଗେ । ୪୯ ।
ଅମୃତ ଚୂମ୍ବିଲା ଚନ୍ଦ୍ରକିର ଗିର ନିତମ୍ବ ପ୍ରାୟ ସୁନ୍ଦର
କାମପାଳ ରାମା କଟକରେ ଦେଖ ରାମକୃଷ୍ଣ ବ୍ୟବସାର । ୫୦ ।
ଅରୁଣ-କମଳ କୋଳେ ଭୃଙ୍ଗ ମେଳ ପ୍ରାୟ ନୟନ ଅଛନ୍ତି
ବରୁଣନନ୍ଦନୀ ସ୍ନେହଭାବଘେନ ଏବେ ସେ ପଡ଼ୁଛି ମାଡ଼ି । ୫୧ ।
ରେବତୀକୁଚ-ଚନ୍ଦକାର କରରେ କଳତ ହଳମୂଷଳ
କ୍ଷୀରସମୁଦ୍ରରେ କଲ୍ଲୋଳ ପରାୟ ଶ୍ରୀଅଙ୍ଗେ ଅନେକ ମାଳ । ୫୨ ।
ଦନ୍ତ ବକ୍ର ଦନ୍ତ ଅନ୍ତକ ଏହୁଛ ପ୍ରାଣୀ ହୃତ ପ୍ରସଙ୍ଗରେ
ଧର୍ମରାଜ ବହୁଣୀଙ୍କି ଆକର୍ଷଣ ଏହୁ କଲେ ଏ ଶିରେ । ୫୩ ।
ଏ ବେନି ଭାଇଙ୍କ ମହିମା ଅନନ୍ତ ଅନ୍ତକେ କରିବ ସଖୀ
ସହସ୍ରମୁଖେ ସହସ୍ରମୁଖ ଯାହା ଲେଶେ ନ ପାରିବେ ଲେଖି । ୫୪ ।

ଏମନ୍ତ ପ୍ରକାରେ କେ କେତେ ଭାବନ୍ତେ ବଳଦେବ ଦେବରାୟେ
ଭକ୍ତଭାବପେନ ବଳଗଣ୍ଡୀ ବାନ୍ଧି ନବରେ କଲେ ବିଜୟେ । ୫୫ ।

ଅମୂଲ୍ୟ ଅଙ୍ଗୁ ଅମୂଲ୍ୟ ଆଭରଣ ଉଲାଗି ହୋଇ ଭୂ-ଉଚେ
ଦୁଇ ପ୍ରହର ଧୂପକୁ ସଜଲାଗି ହୁଅନ୍ତି ଢକଢହ୍ନଚେ । ୫୬ ।

ଫୁଲ ଯୋରେଦ୍ଧା ଫୁଲରେ ବଡ଼ ଗୃଦ୍ଧା ଫୁଲରେ ହୁଅନ୍ତି ସୁବେଶ
ଫାଇ ଫରୁଣାରେ ଫୁଲୁଥାଇ ଭକ୍ତ ମାହର ହୃଦୟଦେଶ । ୫୭ ।

ବେଶ ବଢ଼ାଇ କର୍ପୂର ଲାଗି ହୋଇ ସ୍ନିରେଶଲେ ମଣୋହିରେ
ନାନାପ୍ରକାରେ ଶୀତଳ ଭୋଗ ନେଇ ବାଡନ୍ତି ମହାସୁଆରେ । ୫୮ ।

ଖଣ୍ଡ ମଉଚର ପଣା ହୋଇଥାଇ ଖଣ୍ଡି ଖଣ୍ଡି ହୋଇ ଅଦା
ଅଡ଼ଙ୍କୁର ମୁଗ ମାନଙ୍କରେ ପଡ଼ ଏ ହୋଇଥାଇ ମନବନ୍ଧା । ୫୯ ।
ରସଆଳୟ ରସାଳ ରମ୍ଭାଫଳ ସୁବର୍ଣ୍ଣରୁ ଦଶେ ଗୋରା
ଚନ୍ଦ୍ରକୁ ଉଜ୍ଜ୍ୱଳ ଚନ୍ଦ୍ରହୋଇ ମେଳ ମଣ୍ଡା କୋରା ଅଛ ହୋରା ।୬୦।

ଗଙ୍ଗାବାଣ ପୟ ପେଠୀ ଅଛଣୟ ପକ୍ୱ ସପୁରୀ ପଣସ
ଅନେକରୂପେ ଅମୃତ କୁଣ୍ଡହୁଏ ପଡ଼ କୃଷ୍ଣଚନ୍ଦ୍ର ରସ । ୬୧ ।

ପଉସଚକ ସର ଆଦ ଅନେକ ସୁବାସ ଜଳ ସହିତେ
ଶ୍ରୀନନ୍ଦଘୋଷରଥୀ ଭୋଗ କରନ୍ତି ମୁଁ ତାହା କହିବ କେତେ ।୬୨।

ମଣୋହିଶେଷେ ଆଚମନ ବଢାଇ ଶ୍ରୀମୁଖ ପୋଛି ସୁବାସେ ।
ବଡ଼ଅଲଗିରେ ବଜେକର ଚର୍ଚ୍ଚା କରନ୍ତି ଲୋକଙ୍କୁ ତୋଷେ ॥

ଜଗନ୍ନାଥ ଦେବ ନୃପଛ ଜାଣନ୍ତି ପ୍ରବାସ କଉବା ସୁଖ
ଭୃତ୍ୟବତ୍ସଳ ଯେହ୍ନୁ ପେନ ବୋଲନ୍ତି ଜାଣନ୍ତି ଲୋକଙ୍କ ଦୁଖ ।୬୪।

ଭାବେ ଭଜଲେ ଭାବଗ୍ରାହୀ ଏମନ୍ତ ହୁଅନ୍ତି ଭକ୍ତ ଅଧୀନ
ଦେବାକଥାରେ ସମ୍ପୂନାହିଁ ଚଉବର୍ଗ ହି ଦଶେ ନଉନ । ୫୬ ।

ବଡ଼ଲୋକପଣେ ସେବେ ସୁରଗଣେ ସାନଲୋକ ପକ୍ଷପାତୀ
ଦୟାଶୀଳଭାବ କେ ଅବା କହିବ ଦୀନବାନ୍ଧବ ବୋଲନ୍ତି । ୬୬ ।
ଶରଣ ରକ୍ଷଣ ଅର୍ଥେ ପ୍ରହରଣ ଧରି ହୋଇ ଊର୍ଦ୍ଧ୍ୱବାହା
ଆର୍ତ୍ତଜନପାଇଁ ଅପଲକ ହୋଇ ହୋଇଥାନ୍ତି ଚାହିଁ ଚାହିଁ । ୬୭ ।
ଆଣିବନ୍ତ ପଣ ମହିମା ଏମନ୍ତ ଦୁବହୁଁ କରନ୍ତି ଦାରୁ
ମହାପତିତଜନ ରକ୍ଷା କରନ୍ତି ଦୁସହ କାଳ ଦଣ୍ଡରୁ । ୬୮ ।
ଏତେବଡ଼ ପ୍ରଭୁ ଥାଉଁ ଥାଉଁ ଦୀନକୃଷ୍ଣ ଏମନ୍ତ ମୁରୁଖ
ଅତ୍ୟନ୍ତ ସଂସାର ବିଷୟରେ ପଡ଼ି ପାଉଥାଇ ମହାଦୁଃଖ । ୬୯ ।
ଶବର ଯେମନ୍ତ ଗଜମୋତି ଛାଡ଼ି ପକ୍ୱ ବଦରିକୁ ଆଣେ
ମକ୍ଷିକା ଯଥା ସୁବାସନା ବଣରୁ ଦୁର୍ବାସନା ଦ୍ରବ୍ୟେ ବସେ । ୭୦ ।
ଯେଝ ଛର ପାଇଁ ଅନାସୃତ ହୋଇ ଦୁସହ କଥା ସହଇ
ଅସୁଡ଼ ପାନ୍ଥକୁ ନାନା ସ୍ତୁତି କରି ଲମ୍ବ ହୋଇ ପଡ଼ିଥାଇ । ୭୧ ।
ଅହେ ନନ୍ଦୀଘୋଷରଥ ମହାରଥୀ ଶ୍ରୀଗୁଣ୍ଡିଚା କଉତୁକୀ
ଦୀନକୃଷ୍ଣ ଦାସ ଦୁଃଖ ଜଣାଇବା ଶୁଅଇ କିନା ଏଥିକି । ୭୨ ।

# ଏକାଦଶ ଛାନ୍ଦ

( କନଡ଼ା ରାଗ )

ବଳଗଣ୍ଡି ବାଟ ନବର ବିଜୟ କରନ୍ତେ ପ୍ରଭୁ ଧୀରେ ଧୀରେ
ମହାଗହଣ ଲଗାଇ ସମ୍ଭ୍ରବରେ
ବେନି ପାଶରେ ଚାମରଛତ୍ର ବିରାଜେ ବୀରବାଦ୍ୟ ବାଜେ ସ୍ୱରେ ହେ
ସୁଜନେ
ନିରନ୍ତରେ ଶୁଭେ ଜୟ ଶବଦ
ବିଷ୍ଣୁ ପଦେ ପୂରଇ ପ୍ରତିନାଦ
ବୃନ୍ଦାରକବୃନ୍ଦ ବରଷନ୍ତି ଫୁଲ ବଢ଼ାଇ ପରମାନନ୍ଦ ହେ ସୁଜନେ ।୧।

ଦେଖି ସେ ବାଳୁ ସହର କର ଶୂଳ ଭାବେ ସେ ଗୁଣ୍ଡିଚାବିନୋଦ
ଦୂର କରାଇ ଶ୍ରୀମହାପ୍ରସାଦ
ରହ ରହ ହୋଇ ରଙ୍ଗେ ବେନିଭାଇ ଦେଖନ୍ତି ଭକ୍ତ ପ୍ରମୋଦ ହେ
ସୁଜନେ
ଏକ ହାଥରୁ ଅରେକ ନିଅନ୍ତି
ସେବା କର ଶିରେ କର ଦିଅନ୍ତି
ସୁନାସୀର ଠାରୁ ଅସୁରେ ଅମୃତକୁଣ୍ଡ ବଳେ ହେ ପିଅନ୍ତି ହେ ।୨।

ଏହି ପ୍ରକାରେ କୋଳାହଳ କଇବଲି ଦୂର ହୋଏ ବାଟ ଯାକ
ଏହା କହିଲେ ହୋଇବ ଅନେକ
ଏକରୁଣ୍ଡ ହୋଇ ଅଛନ୍ତି ଯହିଁରେ ଏହା ବେନି ଲୋକ ଲୋକ ହେ
ସୁଜନେ
ଯେଉଁରୂପେ ବରଷା ଜଳଧାର
ସେହିରୂପେ ଜଗନ୍ନାଥ ଶ୍ରୀଗୁଣ୍ଡିଚା ଅମୃତ ସମୁଦ୍ର ପରି ହେ ସୁଜନେ ।୩।

ଅଶା ବିଶ୍ରାମ ଅଶେଷ ସୁଖଧାମ ହସରସ କଉତୁକରେ
ବିଜେ କରନ୍ତେ ଗୁଣ୍ଡିଚ୍ଛନବରେ
ହୁଲା ହୁହୁଡ଼ି ଚନ୍ଦ୍ରଧାପ ଲାଗିଲା ରବି ଅସ୍ତ ସମୟରେ ହେ
ସୁଜନେ
ଏହି ସମୟେ ଭାବଗ୍ରାହୀ
ରଥ ଉପରେ ବନ୍ଦାପନା ହୋଇ
ଭକ୍ତଙ୍କ କରେ ଶ୍ରୀଭୁଜ ଭର ଦେଇଆସନ୍ତି ପ୍ରଭୁ ଓହ୍ଲାଇ ହେ । ୪ ।

ବଳଦେବ ଠାକୁରଙ୍କୁ ଆଗ କରି ପଛେ ବିଜୟେ ମହାବାହୁ
ଅଶ୍ରୁପୁଲକ ସାତ୍ତ୍ୱିକ ହୋଇ
ଗୃହୁଁ ଥିଲା ଯାନ ଭକ୍ତଜନ ମନ୍ତ୍ର ଷଣେ ହେ ଅନ୍ତର ନୋହୁ ହେ
ସୁଜନେ
ବିଜେ କରି ସିଂହାସନ ଉପରେ
ସେନା ଉଲ୍ଲାସ ହୋଇଲେ ସଭିରେ
ମହା ସାନ ସାର ସୁବେଶ ବିଢ଼ାଇ ବିଲୋକିଲେ ମଣୋହରେ ହେ ॥

ଷଡ଼ରସ ଯୋଗ ଚଉଷଠି ଭୋଗ କରନ୍ତି ପ୍ରଭୁ ଜଗନ୍ନାଥ ।
ବଚନରେ କେ କେତେ କହିବ ତା
ମହା ସୁପକାରେ ମହାହି ଯତ୍ନରେ କରଥାନ୍ତି ସୁରମ୍ଭା ହେ
ସୁଜନେ
ଷିର ଖେଚଡ଼ି ଭକ୍ତ ବ୍ୟଞ୍ଜନାଦି
ସେହିମାନେ ସେ ପାଗନ୍ତି ସମ୍ପାଦି
ନୋହିଲେ କମ୍ପା ତାହାଙ୍କୁ ଅନୁକମ୍ପା କରନ୍ତି ପରପ୍ରସାଦୀ ହେ ।୬।

ଅଚମନ ସାର ଶଉଅର୍ଥ ଲାଗିରେ ଶଜସ୍ଥେ କମଳାବକ୍ଷର
ସବୁ ସୁଖ ହୋଇଅଛୁ ସୁଲଭ
କେବଳ କୋହୁଛ ଚଞ୍ଚଳା ଚଞ୍ଚଳ ନେତ୍ରାନ୍ତ ଶ୍ରୀହାଣି ଲାଭ ହେ
ସୁଜନେ
ଯାଇଁ ପହୁଡ଼ିଲେ ଦିବ୍ୟ ପଲଙ୍କେ
ଛନ୍ ଅଛନ୍ ଶରରେ ଚମକେ
ପ୍ରକୃତ ସେବକେ ଯେ ଯାହା ସେବାରେ ରହିଲେ ସିଦ୍ଧେ ନିଶଙ୍କେ ହେ
ସୁଜନେ । ୭ ।

ସୁର ନରମାନେ ମହା ତୋଷମନେ ଶ୍ରୀଜବରୁ ବାହୁଡ଼ିଲେ
ହିଂହଦୁଆରେ କବାଟ ପଡ଼ିଲେ
ଦେବତାଙ୍କ ମେଲଣି ହୋଇଲେ
ଦଣ୍ଡଅସୀମାନେ ଦଣ୍ଡ ଦେବା ଅନ୍ତେ ବସୁହରଙ୍କୁ ଲୋଡିଲେ ହେ
ସୁଜନେ
ଠାବେ ଠାବେ ଲୋକେ ସୁଖେ ରହିଲେ
ଠାକୁରଙ୍କ ଶଜେ ଭାବ କହିଲେ
କେଉଁଠାରେ ଗୀତ ନୃତ୍ୟରେ ଉନ୍ମତ୍ତ ହୋଇ ରାତ୍ର ପୁହାଇଲେ ହେ ॥

ପ୍ରାତ ସମୟେ ଦୀନବନ୍ଧୁ ପ୍ରକାଶ ଶ୍ରୀମୁଖ ଚନ୍ଦ୍ର ପ୍ରକାଶଇ
ଜନ ମନ ଚକ୍ରବାକ ହସଇ
ପାପ ଅନ୍ଧାର ନାଶ ହୋଇ ଯୀର୍ଣ୍ଣିପଦ୍ମ ଗହଣ ଲାଗଇ ହେ ସୁଜନେ ।
ନିତ୍ୟକର୍ମ କଷ୍ଟେ କଷ୍ଟେ ବଢ଼ାଇ
ମଣୋହିରେ ବଜେ ବଳେ ଯାଇଁ
ବିବିଧ ନିନେ ଘନ ବାଦ୍ୟ ବାଜନ୍ତ କୋଲାହଳ ଉଚ୍ଛୁଳଇ ହେ ।୯।

ଯେତେବେଳେ ମନ ଯାହା ହୁଏ ତାହା କା ଆଗେ କହିବା କେ ଅଛୁ
ଅଛୁ ଯେ ଦେଖିଅଛୁ ହୃଦରେ ଯେମନ୍ତ
ଯେ ଯେତେ ଦେଖିଲେ ଚନ୍ଦ୍ରକର ସ୍ୱାଦୁ ଚକୋର ପକ୍ଷୀ ଜାଣିଛୁ ହେ
ସୁଜନେ
ସବୁ ହୃଦୟ ହୃଦୟ ନୁହଇ
ଏହିଠାରେ ଶୁଣ ତାହା କହଇ
ଚନ୍ଦ୍ର ଦର୍ଶନେ ଚନ୍ଦ୍ରମଣି ବାହାରେ କେଉଁ ପାଷାଣ ଦ୍ରବଇ ହେ ॥

ଚେଉ ଫିଟାଇ ବନ୍ଧାପନା ବଢ଼ାଇ ବଜାଇ ବଜ ଅବକାଶେ
ଜନେ ଦର୍ଶନ କରନ୍ତି ହରଷେ
ବାଞ୍ଛାନଥ ବାଞ୍ଛାମାନ ପୂର୍ଣ୍ଣକଲେ ଗୁଣ୍ଡିଚା ଉତ୍ସବ ରସେ ହେ
ସୁଜନେ
ବଡ଼ ଶବଦ ବଡ଼ଦାଣ୍ଡ ଯାଁକ
ବକା କେଣାହିଁ ଲାଗିଛି ଅନେକ
ବାରକାଙ୍କ ପ୍ରାୟ ବୈଶ୍ୟ ଆଦି ନାନା ପସରା ମୋହନ୍ତି ଲୋକ ହେ ॥

ବଚନ ଦେଶ ବନ୍ଧନ କୁଣ୍ଡଳାଦି କଣ୍ଠମଣ୍ଡନ କଣ୍ଠମଣି
ମହା କମନୀୟ ମୋହ ବସଣୀ
କେୟୂର କଙ୍କଣ ଅଙ୍ଗୁଳି-ଭୂଷଣ ହାର ପଦକ କିଙ୍କିଣୀ ହେ
ସୁଜନେ
ଦିବ୍ୟ ଅମ୍ବରମାନଙ୍କରେ ଶୋଭା
ଦୂରୁ ଦେଖିଲେ ଜନମନ ଲୋଭା
ଦ୍ରବ୍ୟ ଦ୍ରବ୍ୟକେ ଦ୍ରବ୍ୟଭୂତ କରନ୍ତି ବସଇ ଇନ୍ଦ୍ରପ୍ରଭା ହେ । ୧୨ ।

ଚୂଆ ଚନ୍ଦନ କୁଙ୍କୁମ ଅଦ୍ଦ ଦେବ କୁଟ୍ଟିମରେ ଶୋଭା ଦଶନ୍ତି
ଭୃଙ୍ଗ ଉରଜମାନେ ବନ୍ଦିଛନ୍ତି
ଧନୀ ପୁରୁଷମାନଙ୍କୁ କରଜୋଡ଼ି ବିବିଧ ରସ ଦେଖାନ୍ତି ହେ

ସୁଜନେ

ଦିବ୍ୟ ଅଞ୍ଜନ ସିନ୍ଦୂରେ ମଣ୍ଡିତ
ଫୁଲ ତାମ୍ବୂଲ ବେଶେ ଅଖଣ୍ଡିତ
କାମେ ବଶ ହୋଇଛନ୍ତି ବାଉ ଦେଇ ମୋହ ହୁଅନ୍ତି ପଣ୍ଡିତ ହେ ।

ନାଗର କୃଷ୍ଣଚନ୍ଦ୍ର ପଣ୍ଡି ଯହିଁରେ ଶବ୍ଦ ହେଉଛନ୍ତି ବେଭାରେ
କେତେ କହିବ ତାହା ବଚନରେ
ଦିଶୁଛି ଅନେକ ପ୍ରକାରେ ରୁଚିର ପସରାମାନଙ୍କ ଠାରେ ହେ

ସୁଜନେ

ରଙ୍ଗ ହୋଇବ ପ୍ରଭୁଙ୍କ ପ୍ରସଙ୍ଗ
ଏହି ଯେନ ଛାଡ଼ିଲ ତହିଁ ରଙ୍ଗ
ତେବେ ପ୍ରଭୁ ଛଦହୋଇଛନ୍ତି ଅଭେଦ ଘନ ବାହୁ ଅଙ୍ଗ ସଙ୍ଗ ହେ ।୧୪

ଜଗମୋହନ ଶବ୍ଦ ଜଗମୋହିନୀ ଯୁଗପମ ବନ ଗଣିଲେ
ବିଷୟକୁ ବିଷ କରି ଗଣିଲେ
ବେଶ ବସନ ଅଶନ ବାସଗୃହ ଅସାର କରି ଗଣିଲେ ହେ

ସୁଜନେ

ବିଧି ଅଭାବରେ ବିଧି ଅଭାବ
ବିଧିର ତା ବଚନେ କେ କହିବ
ବିଧିସରାଗୀ ବଇରାଗେ ଛାଡ଼ିଲେ ବିଧି ଶ୍ରୀଖଣ୍ଡ ଆଦି ଦ୍ରବ୍ୟ ହେ । ୧୫ ।

ଡକାଇ ବିମଳା ସଖୀଙ୍କୁ କମଳା କହିଲେ ସକଳ ଚରିତ
ସଖି ଶୁଣିଲନ୍ତି କି ବିପରୀତ
ବରଷା ପ୍ରବାସୀ ହେଲେ ସୁଖଖିଣି ପ୍ରମୋଦ କରଇ ଜଗତ ଗୋ
ସଜନି
ଯେ ଯାହାର ହୃଅ ପରିତୃପ୍ତି
ବାରେ ହେଲେ ତ ତାହାକୁ ପଚାରି
ମହତ ବିବେକୀ ପ୍ରଭୁ ହେଲେଣି କି ସ୍ନେହେ ଅବଧି ଅଚର ଗୋ ।୧୬।

* * * ର କଳେ କସନ୍ତ
ମୋର ସବୁ ସୁଖ ଭୋଗ ଭରନ୍ତ
କି କି କରି ପୁଣି କହି ମିଠୁବାଣୀ ଶୋକ ସାଗରୁ ତାରନ୍ତ ଗୋ
ସଜନି
* * * * * *
* * ପାଇଲେ ସେ ଶ୍ରୀମୁଖ ମଣ୍ଡଳ
ଦୁଃଖ ନାଶ ଯାଇ ସୁଖ ଜାତ ହୋଇ ଆନନ୍ଦ ହୋଏ ପ୍ରବଳ ଗୋ ।୧୭।

* * * * ମହିମା
କାନ୍ତା କାନ୍ତର ସବୁ ସୁଖସୀମା
ଗୁଣଗ୍ରାହୀ ଗୁଣ କଲେ ଅବିଶ୍ୱାସ ରହେ କି ପୁଣ ଗାରିମା
ସଜନି
* * * * *
* * * * *
ନାୟିକର ସ୍ୱଗ ବେଭରେ କିଅର୍ଥ ବନିତାତ୍ମକ ଗୋ । ୧୮ ।

ଦେଖ ଦେଖ ଲତା ହେଲେ * * *

* * * * ଏହି ମଣ୍ଡ ।

ପକ୍ଷୀ ଜୀବେ ବସା ନ କରି ଏ ବରଷା ମହାସୁଖରେ ବଞ୍ଚନ୍ତି ଗୋ

ସଜନୀ

ଦେଖ ପ୍ରତା * * * * * * *

* * * * * * *

* * ଜଳଦ ସମୟରେ ଦଇବ ମୋତେ ଦଣ୍ଡିବ ଗୋ । ୧୯ ।

ଦେଖ ଏ ବନ୍ଧୁଳ ଘନରେ * * * * *

* * ଉତ୍ତମ କାନ୍ତା କାନ୍ତେ

ଜଗତ ଅଟେହି ମହାସୁଖ ବହୁ କ୍ରୀଡ଼ା କରନ୍ତି ଏକାନ୍ତେ ଗୋ

ସଜନୀ

ମୋହ ପରାୟେ ଧୀନ ଦୁଖୀ ଯେ ନାହିଁ

କର୍ମେ ଯାହା ଅଛି ଅବଶ୍ୟ ଭୁଞ୍ଜଇ

* * ମାୟାରେ ତାହା ନ ଦେନଇ ଗୋ ସଜନୀ । ୨୦ ।

ଦେଖ ଚନ୍ଦ୍ର ସୂର୍ଯ୍ୟ ବୁଲନ୍ତି ଗଗନେ * * *

* * * * * *

କାଲ ଚକ୍ର ଧାତ କ,ଠାରେ ନ ପଡ଼ି କାହାକୁ ଅବା ନ ଦଣ୍ଡେ ଗୋ

ସଜନୀ

ଦେଖ ମହାଭୂତ ଦାତା ଈଶ୍ୱର

* * * * * *

ଭିକାରୀ ହୋଇ ଶମଶାନେ ଥାଇ ସେ ପୁଣ ବଶ କର୍ମର ଗୋ ।୨୧।

କର୍ମଠାରୁ ଫଳ ଗଙ୍ଗାଠାରୁ ଜଳ ଦଇବଠାରୁ ବଳ ନାହିଁ

କେତେ କହିବ ଏହା ପ୍ରାଣସହି

ଯାହା ପ୍ରାଣନାଥ ଶଙ୍ଖଚକ୍ରହାଥ ସେ ହୁଏ ବିରହେ ଦହୁ ଗୋ
ସଜନି
ଏହା ବିଶ୍ୱର ହୃଦ ହୁଏ ଯାହା
ସେହି ସିନା ଜାଣଇ ସଖୀ ତାହା
ମାନହୀନ ହୋଇ ରହି ନ ପାରଇ କେ ସହି ପାରିବ ଏହା ଗୋ ।୧୨।

ବିମଳ ଲୋଚନା ବୋଲନ୍ତି ଶୋଚନା ନ କର ଠାକୁରାଣୀ ମାଏ
ତୁମ୍ଭଠାରେ ତାଙ୍କର ମହାଭୟେ
ଏ ଶ୍ରୀମୁଖ ଚାହିଁ ଯିବୁ ବୋଲି କହୁ କି କରି ଚଳନ୍ତି ପାଏ ଗୋ
ସୁନ୍ଦରି
ତୁମ୍ଭେ ହେଲତ ଜଗତ ଜନନୀ
ଯିବେ ଅବା କେମନ୍ତେ ସଙ୍ଗେ ଘେନି
ବ୍ରହ୍ମାଦି ଶଙ୍କର ଯାହା ଗହଣରେ ଅଛନ୍ତି ପୂରି ଅବନୀ ଗୋ ।୧୩।

ତୁମ୍ଭେ ରତ୍ନାକରନନ୍ଦିନୀ ତୁମ୍ଭର ପ୍ରାଣବଲ୍ଲଭ ଜଗନ୍ନାଥେ
କୋଟି ଇନ୍ଦ୍ରପଦହିଁ ତୁମ୍ଭ ହାଥେ
ଲୋକଙ୍କୁ ସୁନ୍ଦର ହେଲେ ଅସୁନ୍ଦର ତୁମ୍ଭେ ଯାଅନ୍ତି କି ରଥେ ଗୋ
ସୁନ୍ଦରି
ତୁମ୍ଭେ ଏବେ ଉଦବେଗ ନୁହ
ମୋର ଯାଇଁ ଅଇବା ଯାଏ ସହ
ସେ ତୁମ୍ଭ ବିରହେ ଜାଣିକି + + କଷ୍ଟଥିବେ ଦେହ ଗୋ ।୧୪।

ଚନ୍ଦ୍ର ଅଭାବରେ କେତେହିଁ କଷ୍ଟରେ ଚକୋର ଧଇର୍ଯ୍ୟ ଧରଇ
ମେଘ ନ ଥିଲେ ଚାତକ ଡରଇ
ମକରନ୍ଦ ଦଣ୍ଡେ ନ ପାଇଲେ ଖଣ୍ଡେ ଭ୍ରମର ପ୍ରାଣ ସରଇ ଗୋ

ସୁନ୍ଦରି

ତୁମ୍ଭ ସଙ୍ଗ ନ ପାଇ ଚଉବାହା
ଅସିବାକୁ ହୋଇଥିବେ ଉତ୍ସାହା
ଶୁଣିଥିବ ବାଟ କାଲି ପରି ଭେଟ ହେବେ ତୁମ୍ଭ ପ୍ରାଣ ନାହା ଗୋ ।୧୫।

କାମ ଉର୍ଦ୍ଧ୍ୱବାହୁ ହୋଇ ଶୁଣି ଶୁଣି ଓଷ୍ଠାର ଅଣିମ ତାହାଙ୍କୁ
ସେ ଯେ ଉପ୍ରୋଧ ନ କରେ କାହାକୁ
ଶତ୍ରୁ ଅସମୟ କୁଟିଳ ହୃଦୟ ପ୍ରାୟ ବିଯୋଗ ଯାହାଙ୍କୁ ଗୋ

ସୁନ୍ଦରି

ମାଳାକାର ଫୁଲଲତା ପାଳଇ
ସ୍ନେହେ ଜଳ ଦେଇ ପୁଷ୍ପ ତୋଳଇ
ଅଙ୍ଗାରକ ଅଗେ ଚନ୍ଦନ ପଡିଲେ ଦଣ୍ଡକେ କାଷ୍ଠ ଜାଳଇ ଗୋ ।୧୬।

ମୋହୋ ଶପଥ ଏଣୀମୁଖି ଲଜ୍ଜା ଏ ପ୍ରସଙ୍ଗ ନ କର ଅନ୍ତର
ଏତେ ବୋଲି ନୟନୁ ପୋଛନ୍ତି ନୀର
କରେ କର ଧରି ପ୍ରବୋଧନା କରି ବେଗେ ହୋଇଲେ ବାହାର ସେ
ବିମଳା ।

ଅଡ଼ପର ମଣ୍ଡପକୁ ଚଳିଲେ
ମହାପ୍ରଭୁଙ୍କ ସମ୍ମୁଖରେ ମିଳିଲେ
ଖଣ୍ଡେ ଦୂରେ ଦେଖି ପ୍ରଭୁ ପଦ୍ମଆଖି ହୃଦପଦ୍ମରେ ଭାଳିଲେ ସେ
ଠାକୁରେ । ୧୭ ।

ଶିରେ କରଦେଇ ହସ ହସ ହୋଇ ଅପସରି ରହୁ ବିମଳା
ଶୁଣି ବୋଲନ୍ତି ପ୍ରଭୁ ଚକାଡୋଳା
ନ କହିଲେ ତୁମ୍ଭ ଭେଟରେ ହେ ଅମ୍ଭ ବେଳୁଅ ହେଲଣି ଭୁଲା ଗୋ

ବିମଳା

ସବୁ ପ୍ରକାରେ ଆମ୍ଭ ଅଛି ଦୋଷ
ନ କହିଲେ ତୁମ୍ଭର ସବୁ ଯଶ
ଏହି ଯେନ ଯିବା ବାରଣ ବାରଣ କରେ ସଙ୍କୋଚ ଅଙ୍କୁଶ ଗୋ
ତୁମ୍ଭେ ତ ଜାଣ ଯେ ଆମ୍ଭ ପଞ୍ଚପ୍ରାଣ ନକହି ତାହାଙ୍କୁ ଥିଲୁ
ନ ଜାଣିମା ଦୋଷ ଅମ୍ଭେ ପାଇଲୁ
ବଚନ କୃପଣ ହୋଇ ଅଭୂଷଣ କଥାହିଁ ଭୂଷଣ କଲୁ ଗୋ

ବିମଳା

ଏବେ ତ କହ ତାହାଙ୍କୁ ଗୃହିଁରୁ
ତାଙ୍କୁ ଅନେକ ବିନୟ କହିବୁଁ
କହ ହେ ସଂଶୟ ସଙ୍କଟ ଅଭୟ କଉଁ ରୂପରେ ହୋଇବୁ ଗୋ
ବିମଳା । ୨୯ ।

କହ ତାଙ୍କ ଶୁଭ ସନ୍ଦେଶ ସକଳ * * * ଦୁଃଖୀ
ଅମ୍ଭେ ଥାଉଁ ଥାଉଁ ସେ ହେଲେ ସୁଖୀ
ଏହି କଥା ଶୁଣି ନ ଯରେ ରଜନୀ ବିବଶ ହୃଦେ ତା ରଖି ଗୋ

ବିମଳା

ଏତେ କହି ଶ୍ୱାସ ଖରେ ଛାଡ଼ିଲେ
ପ୍ରିୟା ଦୁଃଖକୁ ମନରୁ ଛାଡ଼ିଲେ
ବୋଲେ ଦୀନକୃଷ୍ଣ ଏହି ସମୟରେ ବିମଳା କର ଯୋଡ଼ିଲେ ହେ
ସୁଜନେ । ୩୦ ।

# ଦ୍ୱାଦଶ ଛାନ୍ଦ

( ଏହାକୁ ରାଗେ ରୁକ୍ମିଣୀ ଚଉତିଶା ବାଣୀରେ ଗାଇବ )

ଶୁଣମା ଜଗଜ୍ଜ୍ୟୋତି ତ୍ରୈଲୋକ୍ୟ ଅଧିପତି
ତୁମ୍ଭେ ସକଳ ସୁଖରାଶି
ରତ୍ନାକରନନ୍ଦିନୀ ସୁରନରବନ୍ଦିନୀ
ତୁମ୍ଭର ସେ ପାଟମହିଷୀ
ମହାପ୍ରଭୁ
ତାଙ୍କୁ ଅପୂରୁବ କଉଁ ସୁଖ
ଅପୂରୁବ ହୋଇଛି ଏକା ପଦ୍ମମୁଖ
ଏହୁ ଯେତ ଦୁଖରେ ଭ୍ରମୁଛି ନିରନ୍ତରେ
ତାହାଙ୍କ ମନ ଶିଳୀମୁଖ । ୧ ।

ବିଜେ କଲ ବନରୁ ବିଧୁସର ଅଙ୍ଗରୁ
ବାହାର ନୁହଇ ସନ୍ତାପ
ଅନେକ ଶୀତକର ଉପଚାରେ ଓହର
ନୋହେ କମାଗ୍ନି ଅବଲେପ
ମହାପ୍ରଭୁ
ତୋଳ ତୋଳ ପଙ୍କଜ ପତ୍ର
ସରୋବରମାନେ ହୋଇଲେଣି ଅପତ୍ର
ବଣିଜର ପସରା ମାନ ଅକାଶ ପରା
କଲୁ ଚନ୍ଦ୍ର ଚନ୍ଦନେ ମାତ୍ର । ୨ ।

ଏତେକେ ହେ ଉପତି ନୋହିଲା ସମାପତି
ଆଉକି ଦେବ ମୁଁ ଅଣାଇ

ଜଳଯନ୍ତ୍ର ମନ୍ଦରେ          ପଲ୍ଲବ ଶୟନରେ
ଶୁଆଇ ଅଇଲ ଜଣାଇ

ମହାପ୍ରଭୁ

ଏବେ ଯେ ସୁନ୍ଦର ତାହାଙ୍କର
ସହଜେ ହେ ପ୍ରଭୁଙ୍କୁ ନାହିଁ ତ ଉତ୍ତର
ଯଉଁକାଳେ ବିଦେଶୀ          ଗୃହେ ମିଳନ୍ତି ଆସି
ସେକାଳେ ଗୁଣ୍ଡିଚ ବିହାର । ୩ ।

ନୋହିଲେ କମ୍ପା ଚମ୍ପା          ଶମ୍ପା ହେମ ହସନ୍ତା
ସୁବର୍ଣ୍ଣ ବିବର୍ଣ୍ଣ ହସନ୍ତା
ପୂର୍ଣ୍ଣିଚନ୍ଦ୍ରମଣ୍ଡଳ—          ଛବି ମୁଖମଣ୍ଡଳ
ଉରଜ ଉପରେ ବସନ୍ତା

ମହାପ୍ରଭୁ

କୁଟିଳ ଚିକ୍କଣ କେଶ ପାଶ
କଳାରେ ଯେ ଭ୍ରମର କରେ ଉପହାସ
ଏବେ ସେ ସୁମନସ          ବେଶ ହୋଇ ବିନାଶ
ବିନାଶ କରଇ ମାନସ । ୪ ।

ବିମ୍ବ ବନ୍ଧୁଳି ଛର          କରେ ଯେଉଁ ଅଧର
ସେ ଏବେ ସବୁ ଛଡ଼ିଲା
ଜ୍ୟୋତିଧର ମୁକୁତା          ହାସ୍ୟ ଅତି ଶୋଭିତା
ଦଶନେ ନିରସ ଜଡ଼ିତା

ମହାପ୍ରଭୁ

•

ସଙ୍ଗ ବଚନ ସମତାପାଇଁ
ସରସ୍ୱତୀଠାରୁ ବାଣୀ ଶିଖିଛୁ ସଇ
※ ※ ※ ※ ※ ※
※ ※ ※ ଲକ୍ଷ୍ମଣମନ୍ତ ହୁଅଇ । ୬ ।

ଏବେ ସେ ସ୍ୱରଭଙ୍ଗ କୃଷ ପାଣ୍ଡୁର ଅଙ୍ଗ
କମ୍ପ ପୁଲକ ସ୍ୱେଦ ଜାତ
ଅଶ୍ରୁ ପ୍ରଳୟ ଦେଖ ଧଇର୍ଯ୍ୟ ※ ※ ※
※ ※ ※ ※

ମହାପ୍ରଭୁ

ସେହୁ ମୋ ଯିବାକୁ ଚାହିଁ ରହି
ଯୁଗପଦ୍ମ ମଣ୍ଡ ସେ ଥିବେ ଦଣ୍ଡକହି
ଏହିକ୍ଷଣି ବଳଯ୍ୟେ କରିବେ ଦେବଶ୍ୱାସ୍ୟେ
ବୋଲି ସେ ଅଛିଅଛୁ କହି । ୬ ।

କହନ୍ତି ଏହି ରୂପେ ଗୋ ପ୍ରାଣସହି କୋପେ
ଯାହା କହିଲେ ସେ ପ୍ରମାଣ
ସହଜେ ହେ ଅନ୍ତର ନାହିଁ ତାଙ୍କ ଅମ୍ଭର
ପାଇ ନାହାନ୍ତି ସେ କଷଣ

ଅଗୋ ସଖି

ଏବେ ତୁମ୍ଭେ ହେ ବେଗେ ଯାଅ
ଅସୁଛନ୍ତି ବୋଲି ତାଙ୍କ ଆଗେ କହ
ଯେମନ୍ତେ କୋପ ଜାତ ନୁହେ ସେ ରୂପେ ଚିନ୍ତ
ପ୍ରବୋଧନା କରି ମଣାଅ । ୬ ।

କାଲି ଅବଶ୍ୟ ମୀନ ବେଲ ଗିରି ନବରେ
ଅବସାନ-ସମୟେ ହେରୁ
ତୁମ୍ଭଙ୍କୁ ଯେମନ ତାଙ୍କ ହୃଦ ବେଦନା ଯାକ
ବନସ୍ଥି କହୁ ବନାଶରୁ
ଆଗୋ ସଖି

ତୁମ୍ଭେ ତ କହିଲ ଆମ୍ଭଙ୍କୁ
ଅବକାଶ ନୋହିଲା ଆମ୍ଭ କହିବାକୁ
କେବଳ ତାଙ୍କ ପାଖ ଗ୍ରହିଲା ଧନୁ ଲକ୍ଷ
ହୋଇଲା କାମ ବଶିଖକୁ । ୮ ।

ଶ୍ରୀମୁଖୁ ଯେତେ ଶୁଣି ଶିରରେ ଦେଇ ପାଣି
ବିମଳ ଲୋଚନା ଚଳଲେ
କ୍ଷୀରସାଗର ସୁତା ଜଗନ୍ନାଥ ବନିତା
ସ୍ୱମୁଚେ ତୁରତେ ମିଳଲେ
ଅହେ ଜନେ

ପ୍ରସନ୍ନ ଦେଖି ସଜନୀର
ହୃଦ ପଦ୍ମେ ହରଷ କଲେ ଅବତାର
ବିମଳ ନେତ୍ରୀ ହସି ବୋଲନ୍ତି ପ୍ରଭୁ ଅସି
ପ୍ରବେଶ ହେଲେଟି ତୁମ୍ଭର । ୯ ।

ଅଜ୍ଞାଦେଲେ ଏତେ ହେ ତୁମ୍ଭେ ଯାଇ ବେଗେ ହେ
ଆମ୍ଭ ବଜେ ବାରତା କହ
କରଧର ଏତେ ହେ କହିବ ଆମ୍ଭ ସ୍ନେହେ
ମଣ୍ଡନେ କରବେ ସେନେହ

ଅଗୋ ସଖି
ଏବେ ମାଜଣା ବେଗେ ସାର
ମଣୋହିରେ ମୋ ବୋଲ କର ବଜେ କର
ନାନା କୁସୁମ ଗଭା        ମସ୍ତକେ କର ଶୋଭା
ସୁମନ ମାଳଙ୍କୁ ଉଦ୍ବର । ୧୦ ।

ଅର୍ଦ୍ଧଚନ୍ଦ୍ର ଦୂଷଣ        ଲଲାଟରେ ଭୂଷଣ
କର ସିନ୍ଦୂର ଉର୍ଦ୍ଧ୍ୱଚତା
ମଦକଳ ଖଞ୍ଜନ        ଗଞ୍ଜନ ନୟନରେ
କଜ୍ଜ୍ୱଳ ଦେଉ ଉଜ୍ଜ୍ୱଳତା
ଅଗୋ ସଖି
ସୁରଙ୍ଗ ଅଧର କମ୍ପାଉ
*        *        ର୍ଥିଲୁ ଯାଉ
ଘନ ଲୋକ ମଣ୍ଡନ        ନୟନ ବିମଣ୍ଡନ
ଅଙ୍ଗେ ମଣ୍ଡନ ମଣ୍ଡି ଦେଉ । ୧୧ ।

ଶୁଣି ଅଳପ ହସି        ବୋଲନ୍ତି ପଦ୍ମବାସି
ସତ କହ   *   *
*   *   ଲୁ ହୃଦୟ—ସଂସାର ମଧ୍ୟେ ତ ନ'ଦେଖି
*        *        *        *
ଅଗୋ ସଖି
ବଚନ ଅମୃତୁଁ ଅଧିକ
ଜଗତରେ ବକ୍ର କର ପାରନ୍ତି ଧିକ
ପୁଷ୍ପବନ୍ତ ଯେମନ୍ତ        ଦେଖିବାକୁ ତେମନ୍ତ
ଚିହ୍ନ ଜାଣି ନ ପାରେ ଲୋକ । ୧୨ ।

ମୁଁ ତାଙ୍କର ପ୍ରିୟ ହେଲେ ରଖ ତାଙ୍କର ମାୟା
ଜାଣିବାକୁ ନୋହେ ଭରସା
ନୋହିଲେ କି ବରଷା ଜାଳେ ମୋ'ର ଏ ଦଶା
ବିଧାତା କରେ ଲୋକହସା
ଅଗୋ ସଖି
କହ କହ ପ୍ରଭୁଙ୍କ କଥା
ଶୁଣି ମୋର ମନରୁ ଛାଡ଼ୁ ମହାବ୍ୟଥା
ଶ୍ୟାମସୁନ୍ଦର ଅଙ୍ଗ ହୋଇ ନାହିଁ ନା ଭଙ୍ଗ
ଆଉ ଲୋଡ଼ିବା ସବୁ ବୃଥା । ୧୩ ।

ସବୁ ବେଶ ଭୋଜନ ଶ୍ରୀମୁଖ ଦରଶନ
ମରୁ ସମ୍ପଦ ମୋର ସେହି
ଘନରସ ଚାତକ ନ ପାଇଥିବା ଯାକ
ସୁଖକୁ ବହଇ ସେ ନାହିଁ
ଅଗୋ ସଖି
ପାଇଲା ମାତେ ବସନ୍ତକୁ
ତରୁଲତା ଧରନ୍ତି ନବପଲ୍ଲବକୁ
କ କ କର କୁମୁଦ ଛାଡ଼ଇ ତାର ନିଦ
ଚନ୍ଦ୍ରମା ଉଦୟ କାଳକୁ । ୧୪ ।

ଯେତେବେଳରେ ରଥେ ବସିବେ ପ୍ରଭୁ ପଥେ
ସବୁ ସୁଖ ସମ୍ପଦ ହେବ
ସପତ ସ୍ୱର ରାଗ ଜନ୍ମିଲା ପ୍ରାୟେ ରାଗ
ଅତ୍ୟନ୍ତ ଭାବକୁ ପାଇବ

ଏହା ଶୁଣି
ହସି ବୋଲନ୍ତି ବିମଳାକ୍ଷୀ
ଏକଥାରେ ସଂଶୟ ନାହି କମଳାକ୍ଷୀ
ଦକ୍ଷିଣ ମୂର୍ତ୍ତିସାର ରଥ ମଣ୍ଡଣି କର
ବଙ୍କେ ଉତ୍ସାହା ପଡ଼ିଅଛୁ । ୧୫ ।

ଏହି ସମୟେ ଆସି ଜଣାଏ ଏକ ଦାସୀ
ଶୁଣିମା ଠାକୁରାଣୀ ମାଏ
ନନ୍ଦଘୋଷରେ ବସି ପ୍ରବେଶ ହେଲେ ଆସି
ପ୍ରବାସୀ ପ୍ରଭୁ ଦେବରାଏ
ଅଗୋ ସଖୀ
ବାଟରେ ଅଇଲି ମୁଁ ଦେଖି
ବଡ଼ଦାଣ୍ଡ ଶୋହଳଦ ନୁହଇ ଲେଖି
ଦୀନକୃଷ୍ଣ କହଇ ନୀଳାଦ୍ରି ଛ ଅନାଇ
ଅପଲକ ହୋଇଛୁ ଅକ୍ଷି । ୧୬ ।

## ଶ୍ରୀ ଜଗନମୋହନ ଗୁଣ୍ଡିଚ୍ଚ ବର୍ଣ୍ଣନା

# ତ୍ରୟୋଦଶ ଛାନ୍ଦ

( ମାଳଶ୍ରୀ ରାଗେ ପଞ୍ଚ ତାଳ ଧ୍ୱନରେ ଗାଇବ )

ଅଗ୍ରେ ବନ୍ଧୁ ପ୍ରଭୁ ତାଳଧ୍ୱଜରେ
ମଧ୍ୟେ ଦେବୀ ତୁମ୍ଭ ପ୍ରଭୁ ପଛରେ
କରେ ଧରଛନ୍ତି ଧନୁ ଶରକୁ
କି ଦିଶୁଛନ୍ତି ନିକଟ ଦୂରକୁ
କି କହିବି ତାହା ଅହା ସେ ବିପୁଳ ବାହା ଦିଶୁଅଛି ଯାହା
ତୁମ୍ଭ ଅଙ୍ଗ ସଙ୍ଗ ରଙ୍ଗ କରୁଛି ଏହା । ୧ ।

ନାହିଁ ଚନ୍ଦ୍ରରେଖା ସୁବର୍ଣ୍ଣଲତା
ବିରହେ ହୋଇଛନ୍ତି ଦୁର୍ବଳତା
ହେଲେ ମାଳ ତୂଳ ଅଙ୍ଗକୁ ଭରି
ଲୋକ ବେଭାରକୁ ଅଛନ୍ତି ଧରି
କେବଳ କର୍ପୂର ଅଳକା ବଳକ କର୍ପୂର ତିଳକା ଶୋହେ
କାମଦେବ ବାମ ଧ୍ୟାନ ହୋଇଛି ମୋହେ । ୨ ।

(ମାଗୋ) ସାରଥି ରଥ ବାହୁଛି ବେଗରେ
ପ୍ରବାତେ ଯେସନେ ବୋହିତ ସାଗରେ
ପଡ଼ି ଅଛନ୍ତି ମହା ଉଚ୍ଚାଟରେ
ମନଯାକ * *
ଚାଲ ଅମ୍ଭେ ଏବେ ଦର୍ଶନ କରିବା ଜଗତୀ ଉପରେ ରହି
ମାଏ ବୋଲନ୍ତି ଭଲ କହିଲ ଗୋ ସହି । ୩ ।

ଏତେ ବୋଲ୍ ଜଗତୀରେ ଅବେହ
ଗୃହିଲେ ଲୋକେ ନ'ହସଇ ମନ୍ତ୍ରୀ
ପଡ଼ୁଛି ବଡ଼ଦାଣ୍ଡେ ବଡ ଭିଡ
ଠେଲା ଠେଲି ପେଲା ପେଲି ହାବୋଡ଼
ରଥ ଗଜ ଅଶ୍ୱବଳ ଯେନ ହିଶମ୍ବର କରନ୍ତି ବିଜୟେ
ନରନ୍ଦ୍ରର ମହିମା ତାଙ୍କ ଜୟେ ଜୟେ । ୪ ।

ସ୍ୱର୍ଗପୁର ନର ଗନ୍ଧର୍ବ ବାଦ୍ୟ
ଷବଦେ ଧ୍ୱନି ଅଛି ବସ୍ତୁପଦ
ଘନ ଘନ ବାଜେ ଖଗକାହାଳୀ
ଶୁଭେ ମଙ୍ଗଳ ଗୀତ ହୁଳହୁଳି
ମଙ୍ଗଳ ପାଠ ଦ୍ୱିଜବରେ ପଢନ୍ତି କପୈବାର କରେ ବନ୍ଦୀ
ବୃନ୍ଦାରକବୃନ୍ଦ ଯେନ ଅଛନ୍ତି ବନ୍ଧ । ୫ ।

ଅପସରାମାନେ କରନ୍ତି ନୃତ୍ୟ
ଅକାଶୁ ଫୁଲ ପଡ଼ି ଅପ୍ରମିତ
ରହି ରହି ହୋଇ ବଜେ କରନ୍ତି
କୁର ଦେଇ ଚତୁର୍ବର୍ଗ ସମ୍ପତ୍ତି
ବଡ ଦାଣ୍ଡେ ଅନ୍ନପାଠ ବାନ୍ଧି ବାଶହୋଇ ରହେ ସିନ୍ଧୁ ଜେମା
ମହାସୁଖେ ଦେଖନ୍ତି ମହା ସୁଖସୀମା । ୬ ।

ମୁଖପଦ୍ମ ନେତ୍ର ଭ୍ରମର ପଡ଼ି
ସ୍ନେହ ମଧୁରେ ନ ପାରଇ ଛଡ଼ି
ମନ ହରଙ୍ଗେ ଶ୍ରୀଅଙ୍ଗ ଢମାଲେ
ବଶ ହୋଇ ବସି ରହେ ନିଷ୍ଠଳେ

ଦେଖି ଜନମାନେ ହରଷିତ ମନେ ଆନନ୍ଦେ କରନ୍ତି ସ୍ତୁତି
ଜୟ ଜୟ କମଳା ଦେବୀ ପ୍ରାଣପତି । ୭ ।

ଦାସୀ ଦେବୀଙ୍କି କହନ୍ତି ମଣାଇ
ଶୁଣିମା ମାଏ ସାବଧାନ ହୋଇ
ରହ ରହ ଯା କରନ୍ତି ବଳଯେ
ଏହାଙ୍କ ତୁମ୍ଭ ଅନୁରାଗ ଭୟେ

ରଥହିଁ ପତାକା ବ୍ୟାକେ କହେ ଏକା ମୋର କିଛି ଦୋଷ ନାହିଁ
ପ୍ରଭୁ ଅଜ୍ଞା ମାହକେ ନେଇ ଥିଲି ବହି । ୮ ।

ବାହୁକ ଦଶନରେ ତୃଣ ଧରି
କର ଯୋଡ଼ି କେଶ ମୁକ୍ତୁଳ କରି
ସେହି ଗୁହାରି କରଇ ଗୃପତେ
ନାହିଁ ମୋ ଅପ୍ରାଧ ନ ଦଣ୍ଡ ମୋତେ

ମୁଁ ଅଶ୍ୱପାଳକ ଶତାଙ୍ଗ ଚାଳକ ମୋହ ବୁଝି ଅବା କେତେ
ଏହା କଲେ ସମସ୍ତ ଖଞ୍ଜଣି ସାମନ୍ତେ । ୯ ।

ଶୁଣି କମଳା ହୋଇ ହସ ହସ
ବୋଇଲେ ସେବକର କହୁଁ ଦୋଷ
ତାଙ୍କୁ କାହିଁପାଇଁ କରିବା ରୋଷ
ସେ ବୋଇଲେ ଜାଣ କର ପ୍ରକାଶ

ଏ ପ୍ରଭୁ ଆଜ୍ଞା କରି ନ ହୋଇ ଅବଜ୍ଞା ଦାସ ହେଲେ * *
ମୋହ କରଇ ପ୍ରଧାନ ପୁରୁଷ । ୧୦ ।

ଅନୁରାଗ ଥିଲେ ତୁଥଇ ମାନ
ଯେବେ ନଲେ ବଡ଼ କଥା ହୁଏ ସାନ

ଦେଖ ତ୍ରିଭୁବନ ଭକ୍ତଙ୍କୁ
ଏବେ ଗଲୁ ଅମ୍ଭେ ସମସ୍ତେ ହେ ଦମ୍ଭେ କବାଟ ଦେଇ ରହିବା
କଇତବେ ନାରଣ ବଚନ କହିବା ।୧୧। ।

ତ ବୋଲନ୍ତି ପ୍ରଭୁ ତାହା ଶୁଣିମା
ଅନୁରାଗ ରାଗ ତହିଁ ଜାଣିମା
ବୋଲନ୍ତି ଯେ ବଳଦେବରେ ହେନ୍ଦ
ସବୁର ବାରତା ଏହିଠାରେ ରନ୍ଧ
ତୁମ୍ଭ ଦ୍ୱାର ଯେବେ ରଖା ଯାଇଁ କର ଜାଣିମା ପ୍ରଭୁଙ୍କ ରୀତ
ଏବା ନୋହିବ ତାଙ୍କ ଅଗ୍ରଜେ ଅପ୍ରୀତ ।୧୨।

ଏମନ୍ତ କହୁଁ କହୁଁ ଜଗଦୀଶ
ସିଂହ ଦ୍ୱାରରେ ହୋଇଲେ ପ୍ରବେଶ
ହସି ଅଜ୍ଞାଦେଲେ ବଳଦେବଙ୍କୁ
ବଜେ କଢିବା ହଡ଼ ଉତରକୁ
ଶୁଣି ସୀରପାଣି ମତ୍ତସିଂହଠାଣି ବଜେ କଲେ ଉତଲକୁ
ଏହି ସମୟେ ଶୁଭ ହେଲା ସୁଭଦ୍ରାଙ୍କୁ ।୧୩।

ପଛକୁ ରହି ପ୍ରଭୁ ଦେବ ରାଟ
ହୋଇଲେ ପ୍ରାଣପ୍ରିୟା ସାଙ୍ଗେ ଭେଟ
କାମ ଅନେକ ଦିନୁ ଥିଲା ପାଞ୍ଚି
ସେହି କାଳରେ ହେଲା ସବ୍ୟସାଚ
ଜଗତ ନୟନ ନିର୍ବାଣ ଅୟନ ଜାଣିଲେ ସେହି ସମୟେ
ମହା ପାପୀ ଛାଡ଼ିଲେ କାଳଦଣ୍ଡ ଭୟେ ।୧୪।
କାମିନୀ କାମ ହୋଇ ପ୍ରାପତ
ଅର୍ଥ ଅର୍ଥରୁ ହୋଇଲେ ନିବର୍ତ୍ତି

ସେ ବେଳ କାମ ଧନୁ ପ୍ରାପ୍ତ ହେଲା
ଯେ ଯାହା ବାଞ୍ଛା କଲା ତାହା ହେଲା
ବନ୍ଦାପନା ହୋଇ ରଥରୁ ଓହ୍ଲାଇ ମନ୍ଦିରେ ଚଳେ ହରଜାୟେ
ସବୁ ଦଗରେ ପୂର୍ଣ୍ଣ ହେଲା ଜୟେ ଜୟେ । ୧୫ ।

ଦେଖିଲେ ଦ୍ୱାରେ ପଡ଼ିଛି କବାଟ
ହସିଲେ ମହାପ୍ରଭୁ ଦେବ ରାଟ
ଅନୁରାଗ ଅନୁରୂପରେ ମାନ
ସହଜେ ଭାବଗ୍ରାହୀ ଭଗବାନ
ବୋଲନ୍ତି ଗୋ ଦାସୀ କିପାଇଁ ପ୍ରବାସୀଠାରେ ଅନାଦର ଏତେ
ଏବେ ଜଣାଅ ଠାକୁରାଣୀଙ୍କ ଅଗ୍ରତେ । ୧୬ ।

ଦାସୀ ବୋଲନ୍ତି ଆମ୍ଭ ପ୍ରଭୁ ଯାଇ
କରି ଅଛନ୍ତି ମହା କଟକାଇ
ଠାକୁରାଣୀଙ୍କ ଶ୍ରୀ ଅଙ୍ଗ ଅଳସ
ବିରହେ ହୋଇଛନ୍ତି ଅତି କୃଶ
ଚିନ୍ତା ଜ୍ୱରେ ମନ ସବୁରି ବିମନ କାହାରିହିଁ ନାହିଁ ସୁଖ
ଏ ପୁରକୁ ଅଇଲ ପାଇବାକୁ ଦୁଃଖ । ୧୭ ।

ପ୍ରଭୁ ବୋଲନ୍ତି ଏ କମ୍ବୁ କଣ୍ଟକ
ଏଥି ମିଳଇ ଚତୁର୍ବର୍ଗ ଯାକ
ରାଜା ଯହିଁରେ ବଇକୁଣ୍ଠବାସୀ
କମଳା ଯାହାର ପାଟ ମହିଷୀ
ସେ ନଗ୍ରରେ ଆସି ଅର୍ଦ୍ଧରେ ପ୍ରବାସୀ ହେଜଇତ ଯେବେ ଅଶ
ତେବେ କାହାକୁ ବୋଲିବା କର୍ମର ଦୋଷ । ୧୮ ।

ଶୁଣି କମଳା ହସ ହସ ହୋଇ
ବୋଇଲେ ଦାସୀ ଦ୍ୱାର ଦଅ ଫେଇ
ଝଟିତ ହୃଦରେ ଫେଡ଼ି କବାଟ
ହୋଇଲେ ଲକ୍ଷ୍ମୀ ନାରାୟଣ ଭେଟ
ତେତେବେଳେ ଯାହା ହୋଇଲା କେ ତାହା କହିବ ଅବା ବଚନେ
କବ ଅପମାନ ପାଇବେ ତ୍ରିଭୁବନେ । ୧୯ ।

ଅପୂର୍ବିକ ଶ୍ଳୋକ ପାଇଲା ପୁତ୍ର
ଅଜନମ ଅନ୍ଧ ଲଭିଲା ନେତ୍ର
ନିଧି ପଡ଼ିଲାକ ଦରିଦ୍ର ହସ୍ତେ
ଲେଖିଲେ ଏ ଆନନ୍ଦ ଅବା କେତେ
ଅରୁଣ ଉଦୟ ଦେଖି ଚକ୍ରଚୟ ଚନ୍ଦ୍ରମା ଗ୍ରହି ଚକୋର
ନେତ୍ର ପ୍ରୀତ ହୋଇଲେ ନାଗରୀ ନାଗର । ୨୦ ।

ଏରୂପେ ସୁଖ ସମ୍ପତ୍ତି ବଢ଼ାଇ
ଶ୍ରୀଅଙ୍ଗ ସିନ୍ଦୂର ସେଭା କଢ଼ାଇ
ମହାସ୍ନାନ ସାରି ପ୍ରବେଶ ହେଲେ
ଅମୃତ ଯୋଗାଡ଼ ମଣୋହି କଲେ
ଆଚମନ ଶେଷ କରି ଜଗଦୀଶ ବଡ଼ଅ ଲାଗିରେ ବଜେ
ଆଜ୍ଞାଦେଲେ ପ୍ରିୟାଙ୍କୁ ଗ୍ରହି ମୁଖାମ୍ବୁଜେ । ୨୧ ।

ଆଜକୁ ଆମ୍ଭ ବଜେ କହିବାର
ନବ ଦିନ ନବ ଯୁଗ ପ୍ରକାର
ତୁମ୍ଭ ସ୍ନେହ ଯେନ ନିଦ୍ରା କାମିନୀ
ଦିନେ ଦେଖା ଦେଇ ନାହିଁ ଯାମିନୀ

କର୍ପୂର ଫୁଲେ ଚନ୍ଦନ ବେଶମାନ କେହୁ ନୋହେ ସୁଖକର
ମନ ଭ୍ରମୁ ପାଶରେ ଥାଇ ଈଶ୍ୱର । ୨୨ ।

ପ୍ରଛନ୍ନ ଯେସନେ ଅନ୍ତରେ ଥାଇଲ
ଅକ୍ଷର ନିର୍ମଳ ଦଶଇ ଭଲେ
ସେହୁ ପ୍ରକାରେ ଭ୍ରମୁ ଗୃହ ଦେଖି
ଦେହରେ ଧଇର୍ଯ୍ୟମାନ ଥିଲୁ ରଖି
ଗୀତ ବାଦ୍ୟ ନୃତ୍ୟ ହେଲେହେଁ ଅଗ୍ରତ ନ ଘେନଇ ଚହିଁ ଚନ୍ଦ୍ର
ଦ୍ରବ୍ୟ ଧ୍ୟାନରେ ସଦା ଯୋଗୀନ୍ଦ୍ର ଯେସନ୍ତ । ୨୩ ।

ଷଡ଼ରସରେ ନାନା ଭୋଗମାନ
ସ୍ୱାଦୁ ନୋହିଲ୍ଲ କର ଅନ ଅନ
କମଳା କହିଲ୍ଲେ ବେଳୁ ସନ୍ଦେଶ
ବୁଦ୍ଧି ବିବେକ ହୋଇଲ୍ଲ ବିନାଶ
ବିଲଷା କୋକିଳ ପ୍ରାପ୍ତ ଚଇକାଳ ମୁଖରୁ ନଇଲ୍ଲ ଭାଷା
ବଡ଼ କର କେତେ କହିବୁ ସେ ଦଶା । ୨୪ ।

ଏମନ୍ତ କଉ କାହ୍ନୁ ସ୍ନେହ ବାଣୀ
ସନ୍ତୋଷ କଲେ ଦେବୀ କମଳଣୀ
ବଲ୍ଲଭ ବଡ଼ ଶିଂଗାର ବଢ଼ାଇ
ଦେବତାମାନଙ୍କୁ ମେଲାଣି ଦେଇ
ଦିବ୍ୟ ପଲଙ୍କ ଅଙ୍କରେ ପହୁଡ଼ିଲେ କମଳା କରନ୍ତି ସେବା
ଏତେକେ ରହିଲ୍ଲ ଦୀନକୃଷ୍ଣ କହିବା । ୨୫ ।

---

## ଚତୁର୍ଦ୍ଦଶ ଛାନ୍ଦ

ବସନ୍ତ ରାଗେ କଳସା ବାଣୀରେ ଗାଇବ

ଏଥୁଅନନ୍ତରେ ନିଶି ହୁଏ ଅବସାନ
ସମସ୍ତ ଦିଗେ ଶୁଭଇ ତାମ୍ରଚୂଡ଼ ସ୍ୱନ
ଉପବନ ବନେ ପକ୍ଷୀ କଲେ କୋଳାହଳ
ଚକ୍ର ଚକ୍ରବାକୀ ସଙ୍ଗତରେ ହେଲା ମେଳ । ୧ ।

ରାଜ୍ୟଭ୍ରଷ୍ଟ ରାଜାପ୍ରାୟେ ରାଜା ଜ୍ୟୋତିହୀନ
କୁଗ୍ରାମ ଗୁଣୀ ପ୍ରାୟେ ଚକୋରେ ହେଲେ ଦୀନ
+ + + +
ଅଦୃଶ୍ୟ ତାରକା ପ୍ରାୟେ ତାରକା ଅଦୃଶ୍ୟ । ୨ ।

ରୂପାଜୀବା ମନ୍ଦିରରୁ ବାହାର ଭୁଜଙ୍ଗ
ଚୋର ପ୍ରାୟେ ହୋଇଗଲେ ତରଙ୍ଗ ତରଙ୍ଗ
ଉପପତିମାନେ ଧୂପମଣିକ ପରାୟେ
ପଳାଇ ପଶିଲେ ଯାଇ ଆପଣା ନିଳୟେ । ୩ ।

ମିଥ୍ୟାବାଦୀ ବଚନକୁ ଲୋଭୀ ପ୍ରାୟେ ହୋଇ
ସଙ୍କେତ ସ୍ଥାନେ କେ ଅଭିସାରିକା ନ ଥାଇ
ଅବିବେକୀ କୃପଣ ଦ୍ୱାର ମାଗୁଣି ପ୍ରାୟେ
କାମାତୁର ହୋଇ ଖର ନିଶ୍ୱାସ ପକାଏ । ୪ ।

ବରବେଶ ପ୍ରାୟେ କରିଁ ଶଠର ଆକୃତି
ଉପହାସ କଲା ଦେଖି ଖଣ୍ଡିତା ଯୁବତୀ
ହସରସ ମିଶାଇ ବୋଇଲା ଆହେ ନାହା
କାଲିରାତେ କାହାକୁ ହୋଇଲ ତୁମ୍ଭେ ବେହା । ୫ ।

ଗଣ୍ଡରେ ତାମ୍ବୂଲ ବୋଲ ଅଧରେ କଜ୍ଜଳ
ଏତେ ବିପରୀତ ବେଶ ହେବାରୁଁ କି ଫଳ
କପାଳେ ଅଳକା ତଳା ଭଲ୍ଲ ସ୍ଥୁଳ କର୍ମ
ଶ୍ରମ ପାଇ ପକାଇ ଅଇଲ ହୃତ ସ୍ତୋମ । ୬ ।

କଉଣିକ ପ୍ରାୟେ ବସିଥିଲ କାହା କୁଟେ
ଏବେ ଅସିଅଛ ପଶିବାକୁ କେଉଁ କୋଟେ
କହୁଁ ରମଣୀ ଭୁମ୍ବର ପାଶରୁ ଉଠିଲା
କୃମ୍ବାଳସ ହୋଇ ଉଠ ବୋଲି ଡୋଳ ଦେଲା । ୭ ।

ନିଶାଚର ପ୍ରଭୁ ଗୃହପ୍ରାଏ ଗଲା
ସିନ୍ଧୁଘୋଷ ଜଣି ଦଧିମନ୍ଥନ ଶୁଭିଲା
ରମଣୀମଣି ରମଣୀମଣିର ପରି ଏ
କଳରବେ କଳରବ କଲେ ଅଛଣୟେ । ୮ ।

ଉତ୍ତମ କାମିନୀଙ୍କ ନିଶ୍ୱାସ ପ୍ରାୟେ ହୋଇ
ଆହ୍ଲାଦ ସୁଗନ୍ଧିତଳ ପବନ ବହଇ
ନାଗରୀଙ୍କି ନାଗର କଲା ପରିଯେ ସ୍ଥୁଳ
କୁସୁମ ପାଶେ ମଧୁପେ ମଧର କୂଜନ୍ତି । ୯ ।

କୃଷ୍ଣକଥା ଶ୍ରବଣରେ ପାତକ ପରିଯେ
ଅନାଉଁ ଅନାଉଁ ଅନ୍ଧକାର ଗଲା ଖୟେ
ଦୀନବନ୍ଧୁ ପ୍ରାୟେ ଦିନବନ୍ଧୁ ପ୍ରକାଶିଲେ
ଶ୍ରୀକରରେ ଅରବିନ୍ଦ ଚକ୍ର ପ୍ରକାଶିଲେ । ୧୦ ।

ଦେବାଳୟମାନଙ୍କରେ ଶୁଭେ ଶଙ୍ଖଧ୍ୱନି
ସ୍ନାନ କରିବାକୁ ସମୁଦ୍ରରେ ଗଲେ ମୁନି

ଶାରୀଶୁକମାନେ ମୂକଭାବକୁ ଛାଡ଼ିଲେ
ଶ୍ରୀରାମ ଶ୍ରୀରାଧାକୃଷ୍ଣ ନାମକୁ ପଢ଼ିଲେ । ୧୧ ।

ଗୃହବର୍ତ୍ତି ବ୍ୟାପାରେ ହେ କଲେ ପରବେଶ
ଚକ୍ରଧର ସ୍ୱମରେ କେ ହୋଇଲେ ପ୍ରବେଶ
କାକମାନେ ଡାକ ଦେଇ ବସାରୁ ଉଡ଼ିଲେ
ପଥିକେ ଯେ ଯାହା ଦ୍ରବ୍ୟମାନ ସଜାଡିଲେ । ୧୨ ।

ଜଗନ୍ନାଥ ଦେବରାଜା ହେଲେ ଅପଛୁଡ଼
ସେବକେ ଖଟିଲେ ଯାଇଁ ମାଜଣା ଯୋଗାଡ଼
ଖଟଣୀ ସାମନ୍ତେ ଅବୋରଲେ ଯେତ୍ଥା ସେବା
କେ କହିବ ତାଙ୍କ ଭାଗ୍ୟ ବଚନରେ ଅବା । ୧୩ ।

ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ପ୍ରଭୁ ଦରଶନ
ଅଷ୍ଟାଙ୍ଗ ଯୋଗରେ ଯୋଗୀ ଯାହା କରେ ଧ୍ୟାନ
ସେ ପ୍ରଭୁ ସେବା ସୁଲଭ ତାଙ୍କୁ ନିଶିଦିନ
ଏହି ହେନ କରି ମୋକ୍ଷ ତାହାଙ୍କୁ ଅଧୀନ । ୧୪ ।

ବେଶ ଶେଷେ ଧୂପ ସାରି ଆଚମନ କରି
ବଡ଼ଅ ଲଡ଼ିରେ ବକେ ନୀଳାଦ୍ରି କେଶରୀ
ଏହିରୂପେ ଭନ ଧୂପ ପାଖ ଅବକାଶ
ବଡ଼ାଲ ଶୟନ କଲେ ପରମ ପୁରୁଷ । ୧୫ ।

ଅୟନ ପାଶ ଲେଉଟ ବରଷାର ଗଲା
ଶରଦ ସମୟ ଆସି ପ୍ରବେଶ ହୋଇଲା
କୃପଣ ବାଗାଡ଼ମ୍ବର ଲୋକ ପ୍ରାୟ ହୋଇ
ଧୂନ କଲେ ମେଘ ଜଳ ଦାନକୁ ନ ଦେଇ । ୧୬ ।

ବକ୍ଷ ବସ୍ତ୍ରାବ ହୃଦରେ କଉସ୍ତୁଭ ପ୍ରାୟେ
ନିର୍ମଳ ଗଗନରେ ଚନ୍ଦ୍ରମା ଶୋଭା ପ୍ରାୟେ
ତାର ତାରକା ନିକର ସୁନ୍ଦର ଦିଶନ୍ତି
ଅମୃତ ଅନ୍ଧାରେ ଯେସନେ ଚନ୍ଦ୍ରକାନ୍ତି ପନ୍ତି । ୧୭ ।

ସାଧୁ ହୃଦ ପ୍ରାୟେ ଦିଗ ଦିଶିଲେ ପ୍ରସନ୍ନ
ସୁଖୀ ହେଲେ ଚକୋରେ ଗୃଛକେ ହେଲେ ଦୀନ
ପଛ ବନେ ପକ୍ଷୀ ଯେସନେ ବେଣକୁ ନ ଲକ୍ଷି
ସେହୁ ରୂପେ ଶିଖୀ ଛନ୍ନ ଉନ୍ନ କଲେ ପକ୍ଷେ

ଚନ୍ଦ୍ର ଖଣ୍ଡ ପ୍ରାୟେ ମୃନକୁସୁମ ପ୍ରକାଶ
ଗୃମର ପ୍ରାୟେ ଦିଶିଲେ ଚୋକ୍ଷ ସୁମନସ ।
ସୁମାଦାସ ପ୍ରାୟେ କାଶ ବିକାଶ ହୋଇଲେ
ମାନସରୁ ମାନସର ବାସିଏ ଅଇଲେ । ୧୯ ।

ଧରଣୀ ପୁଷ୍କରିଣୀରେ ହେଲେ ଆସି ସଙ୍ଗ
ସଙ୍ଗେ ଯେନ ରମଣୀଙ୍କ କଲେ ନାନା ରଙ୍ଗ
ସମସ୍ତ ଜନମାନଙ୍କ କଳୁଷ ଭୁଟିଲେ
ସୁମୁଖୀ ମୁଖ ପରାଏ କମଳ ଫୁଟିଲେ । ୨୦ ।

ପୀତାମ୍ବର ଅଙ୍ଗେ ପୀତ ଅମ୍ବର ପରାଏ
ହଳଦମନଙ୍କରେ କେ ପର ଶୋଭା ପାଏ ।
ରସାଲ ପତ୍ର ତୋରଣ ପ୍ରାଚିମ୍ଭେ ଶୁକ ପନ୍ତି
ଉଡ଼ି ଯିବାରେ ଆକାଶ ସୁନ୍ଦର ଦିଶନ୍ତି ।

ଏମନ୍ତ ଶରଦ ଋତୁ କାର୍ତ୍ତିକ ମାସରେ
ଶଯ୍ୟାରୁ ଉଠିଲେ ପ୍ରଭୁ ଆପଣା ବାସରେ

ବାଜିଲା ବିବିଧ ବାଦ୍ୟ ଅତ୍ୟନ୍ତ ସମ୍ଭ୍ରମ
ମହା ଉତ୍ସବ ହୋଇଲା ସବୁ ଲୋକଙ୍କର
ଏମନ୍ତ ହୋଇ ଶ୍ରୀ ଜଗନ୍ନାଥଙ୍କ ଚରିତ
ଜଗମୋହନ ନାମରେ ହୋଇଲା ଏ ଗୀତ
ସାଧୁ ଜନମାନେ ଏହା ଶୁଣ ମନ ଦେଇ
ଜଗନ୍ନାଥ ଚରଣେ ଭକତିବନ୍ତ ହୋଇ । ୧୩ ।

ନ ଜାଣଇ ପାଠ ମୋର କିଛି ଜ୍ଞାନ ନାହିଁ
ଭାଷାରେ କହିଲି ଭାବଗ୍ରାହୀ ଭାବ ବହି ।
ଜଳଧିରୁ ଜଳ ବିନ୍ଦୁ ଆଣିଲା ପରାଏ
ଜଗନ୍ନାଥ ଯାତ୍ରା ବିଧି କହିଲି ଥୋକାଏ । ୧୪ ।

ଅପ୍ରମିତ ଅନନ୍ତର ନ ଥିଲେ ହେ ଅନ୍ତ
ଆପଣା ବଳରେ ପକ୍ଷୀ ଉଡ଼ଇ ଯେମନ୍ତ
ସେହିରୂପେ ଅନେକ ରୂପେ ଉତ୍ସବ ଅଛି
କହିଲି ସାର ଦ୍ୱାଦଶ ଯାତ୍ରା ବିଧି ବାଛି । ୧୫ ।

ସାଧୁଜନ ସଙ୍ଗରେ ପୂର୍ବରେ ତାହା ଦେଖି
ବଡ଼ କରି ହୃଦୟ ମଧ୍ୟରେ ଥିଲି ରଖି ।
ଯେତେବେଳେ ପ୍ରବେଶ ହୋଇଲା ନାନା ଦୁଃଖ
ବାହାର ତା କରି ପାଇବାକୁ ମହା ସୁଖ । ୧୬ ।

ଜଗନ୍ନାଥ ଚରିତ ଅମୂଲ୍ୟ ରତ୍ନମଣି
ସବୁଠାରୁ ଭରସା ତା କରିଅଛି ଜାଣି ।
ଦୁସ୍ତର କାଳ ଚକ୍ରାରୁ ତରିବାକୁ ମୁହିଁ
ଅହର୍ନିଶି ହୃଦ ସମ୍ପୁଟରେ ରଖି ଥାଇ । ୧୭ ।

ଜଗନ୍ନାଥ ନାମ ମୋର ପରମ ମଙ୍ଗଳ
ଜଗନ୍ନାଥ ନାମ ମୋର ସବୁଠାକୁ ବଳ ।
ଜଗନ୍ନାଥ ନାମ ଭବ ଜଳଧିଙ୍କ ଭେଳା
ଜଗନ୍ନାଥ ନାମ ଦୁଃଖ ଅନ୍ଧାରକୁ ତୁଳା । ୨୮ ।

ଜଗନ୍ନାଥ ନାମ ମୋର ଜଗତ୍ ପାବନ
ଜଗନ୍ନାଥ ନାମ ସବୁ ବାର ବ୍ରତମାନ ।
ଜଗନ୍ନାଥ ନାମ ମୋର ସବୁ କର୍ମ ଧର୍ମ
ଜଗନ୍ନାଥ ନାମ ମୋର ନାଶେ ଭବ ଭ୍ରମ । ୨୯ ।

ଜଗନ୍ନାଥ ନାମ ମୋର ଅଭୟ ପଞ୍ଜର
ଜଗନ୍ନାଥ ନାମ ମୋର ସବୁ ସୁଖଘର ।
ଜଗନ୍ନାଥ ନାମ ମୁକ୍ତି ବାଟ ସୁନଶୀର
ବୋଲେ ଦୀନକୃଷ୍ଣ ଜଗନ୍ନାଥ କୃପା କର । ୩୦ ।




କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀଯୁକ୍ତ ବଛନ୍ଦ ଚରଣ ପଟ୍ଟନାୟକ
ବି,ଏ, ଙ୍କ ଦ୍ୱାରା ମୁଦ୍ରିତ । ୧୯୩୧

# ଶୁଦ୍ଧି ପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୬ | ୨୧ | ପଛଦ୍ୱୋଇ ରହ୍ନ | ପଛଦ୍ୱୋଇ ରହ୍ନବୋଲି |
| ୧୭ | ୨୦ | ଦଉଡ଼ଉସ ସଭସ୍ମା | ଜଉଡ଼ର ସରସଭସ୍ମା |
| ୧୭ | ୨୧ | ଖଇର ଚୂଅ | ଖଇର ଚୂଲ |
| ୧୮ | ୧୬ | ଚୋଳି | ଭୂଲୀ |
| ୧୯ | ୧୬ | ବିଦ୍ୟାସ | ବିନାଶ |
| ୨୪ | ୧୪ | ଗର୍ଭିକୁ | ଗର୍ବିକ |
| ୨୫ | ୬ | ହୋଇ ଏହ୍ନ ବେଶ | ହୋଇ ବେଶ |
| ୨୫ | ୧୦ | ସେ ବର୍ତିକେ | ବର୍ତିକେ |
| ୩୧ | ୪ | ଦେଖ ଚନ୍ଦନ | ଦେଖ ତ ଚନ୍ଦନ |
| ୩୪ | ୧୪ | ଇନ୍ଦ୍ର ଚନ୍ଦ୍ରର ବିବରଣ | ଇନ୍ଦ୍ର ଚନ୍ଦ୍ର ନିବ ବରୁଣ |
| ୩୫ | ୨୨ | ପାଦ ପଦ୍ମ | ପାଦ ପଦ୍ମର |
| ୪୦ | ୧୦ | ବିରୋଧ | ନିରୋଧ |
| ୪୧ | ୧୧ | ଗନ୍ଧାଭ୍ରଷ୍ଟ | ଗନ୍ଧ ଭ୍ରଷ୍ଟ |
| ୪୨ | ୬ | ରଥରେଣ | ରଥ ଚରଣ |
| ୪୫ | ୧୭ | ସଂଖା | ସଖା |
| ୪୭ | ୪ | ପଢ଼ିବାକୁ | ପଢ଼ିବାକୁ |
| ୪୯ | ୧୭ | ଦିଗଚନ୍ଦ୍ର | ଦିଗ ଚନ୍ଦ୍ର |
| ୫୬ | ୧୧ | ବିଚିତ୍ର ବିବୋଧ | ବିବୋଧ |
| ୬୩ | ୮ | ଅବିବେକ | ଅବିବେକ |
| ୭୨ | ୧୧ | ନୀଳାଦ୍ରୀ | ନୀଳାଦ୍ରି |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭୭ | ୬ | ଉଖାଇ | ଢଖାଇ |
| ୭୭ | ୧୯ | ପଣ୍ଥ ଜନକ | ପଣ୍ଥ କନକ |
| ୮୩ | ୧୫ | ବାନ୍ଧା | କାନ୍ଧା |
| ୮୫ | ୧୧ | ଚନ୍ଦ୍ର କାକୁଳ | ଚନ୍ଦ୍ର କାନ୍ତକୁ |
| ୮୫ | ୧୬ | କଲାପ ଢୋଷ ଢୋଏ ପୁରାଙ୍ଗନା | ପୁରାଙ୍ଗନା କଳାପ ଢୋଷ ଢୋଏ |
| ୮୭ | ୨୦ | ଶିରେ | ସୀରେ |
| ୯୧ | ୧୭ | ସ୍ୱରସ୍ବତା | ସ୍ୱତାମ୍ୟତା |
| ୯୩ | ୧୫ | ଦେଶ | ବେଶ |
| ୯୪ | ୧୪ | ପ୍ରଚ୍ଛଦ | ପ୍ରଚ୍ଛନ୍ନ |
| ୧୦୫ | ୧୦ | ଦରଶଦ | ଦରଶନ |
| ୧୧୧ | ୧୧ | ବୋବନ୍ତି | ବୋଲନ୍ତି |

# ଜଗମୋହନ ଛାନ୍ଦ ଟୀକା

## ପ୍ରଥମ ଛାନ୍ଦ

ଆନନ୍ଦ କନ୍ଦ—ଆନନ୍ଦର ମୂଳକାରଣ ଜଗନ୍ନାଥ । ପରିକ୍ରମା—ପ୍ରଦକ୍ଷିଣ କରିବା । ଦେବାବସାନେ—ମୃତ୍ୟୁପରେ । କମ୍ବୁ କଣ୍ଟକ—ଶଙ୍ଖକ୍ଷେତ୍ର-ପୁରୀ । ଚଇତ୍ରରଥ—ଚୈତ୍ରରଥ=କୁବେରଙ୍କ ବଗିଚା । ନନ୍ଦନ—ଇନ୍ଦ୍ରଙ୍କ ବଗିଚା । ଆରାମ—ଉଦ୍ୟାନ, ବଗିଚା । ଉପଯୋଗ—ଲାଗି । ସୁମନ—ଫୁଲ । ଅମୃତ—ଦୁଧ ବା ଘିଅ, ଜଳ, ଦ୍ରବ୍ୟ । ଅସିତ ସିତ—କଳା ଧଳା । ଅମୃତଚର—ଖେଚର—ପକ୍ଷୀମାନେ । ଅବଗାହ—ସ୍ନାନ । ଅଗ୍ରଜ—ଭୁଷଣ୍ଡ କାକ । ସୁଧା—ଚୂନ । ଆଦ୍ଧ—ମହାବସ୍ତ୍ର । ଶେଷ—ଅନନ୍ତ ବାସୁକି । ହଂସ—ସୂର୍ଯ୍ୟ । ଅର୍ଣ୍ଣବନୃପଣ—ବରୁଣ । ପାହ୍ନ—ରଷାକାଶ । ନାଗେନ୍ଦ୍ର—ସର୍ପରାଜ । ଜଗତୀରେ—ଅଟ୍ଟାଳିକାରେ । କୋକନଦ—ରକ୍ତପଦ୍ମ । ଧନପତି—କୁବେର ସେ ଅଳକାର ପୁରୀର ମାଲିକ । କୁଳିଶ—ବଜ୍ର । କଥା ପ୍ରସଙ୍ଗ—କଥାବାର୍ତ୍ତା ଓ ବିଷବୈଦ୍ୟ ବା କେଳା । ସୁନାଶୀର—ଇନ୍ଦ୍ର । ଫଗାତ ଫଘାତ—ନରକ ସମ୍ବନ୍ଧ । ବାରୁ—ଘୋଡ଼ା । ସାତଅଶ୍ୱରଥ—ସୂର୍ଯ୍ୟଙ୍କ ରଥ । ହସ୍ତକ—ହାତର ଅଭିନୟ ।

---

## ଦ୍ୱିତୀୟ ଛାନ୍ଦ

ଅପହ୍ନୁତ—କବାଟ ଫିଟିବା, ନିଦ୍ରାଭଙ୍ଗ କରିବା । ମଲ୍ଲିମ—ବେଶ ଉଲଗି । ଉଦ୍ରପ—ଅଳଙ୍କାର ଓ ଆଭରଣ । ଶ୍ରୀଫଳ—ନଡ଼ିଆ । ଦୋସୋହା—

ବସ୍ତ୍ର ବିଶେଷ । ଚୋଳ—କଞ୍ଚୁକ, ଚୋଲି । ଶ୍ରୁତିମଧ୍ୟେ ଶୁଣନ୍ତି—ଅବଧାନରେ ରହିଲ । ଭୂଷ୍ଣୁଜା—ଭୋଗକାରୀ । ଗୋଠିକା—ପିଷ୍ଟକ ବିଶେଷ ଇକ୍ଷୁ—ଆଖୁ । ଘିଉର ପର—ଖାଦ୍ୟ ବିଶେଷ । ସଢଅ—ପିଷ୍ଟକ ବିଶେଷ ଠାଲୁଅ—ମିଷ୍ଟାନ୍ନ ବିଶେଷ । ପାଚଜାଠକ—ଏକ ପ୍ରକାର ପିଠା । ଢାରକ—ଦର୍ପ । ଢାରକୁ—କନ୍ଦର୍ପକୁ ମର୍ଦ୍ଦନ କରି—ମଢ଼ାଇ । ବାରକୁ—ନିଷେଧ କରିବାରେ; ବା ବାରକୁ କରି—ଥରେକର । ଅବନୀଦେବ—ବ୍ରାହ୍ମଣ । ହୃଦୟକୁମୁଦ—ହୃଦୟକୁ ହର୍ଷ । ଉଦଅଇ—ଉଦିତ ହୁଏ । ମାର୍ଗଦେଶୀ—ଦେଶୀମାର୍ଗ—ଦେଶୀଗୀତ । ଅମରକୁମୁଦଚନ୍ଦ୍ର—ଦେବତାମାନେ ହେଲେ କଇଁ ଫୁଲ ତାଙ୍କ ମନକୁ ପ୍ରଫୁଲ୍ଲ କରିବାରେ ସେ ଚନ୍ଦ୍ର ଅଛନ୍ତି—ଦେବତାମାନଙ୍କ ମନଉଲ୍ଲାସକାରୀ । ଅରି କରି ମୃଗଇନ୍ଦ୍ର—ଶତ୍ରୁ ହେଲେ ହାତୀ—ତାଙ୍କ ସିଂହ ପରି ସେ ଅଛନ୍ତି—ଶତ୍ରୁ ନାଶକ ।

---

## ତୃତୀୟ ଛାନ୍ଦ

ଚତୁଃସମ—ଚତୁସମ—ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମର ଲେପ । ପରିହରଣ—ପିନ୍ଧିବା । ଜାଇ—ଫୁଲ । ଗର୍ଭକ—କେଶମଧ୍ୟରେ ଥିବା ମାଳା । ଲମ୍ବିତ—ଝୁଲିବା ଫୁଲ । ବେଷ୍ଟିତ—ଗୁଡାଇବା ଫୁଲ । ଆବେଶ—ଅଭିଭୂତ । ଘୂମିତ—ଘୂର୍ଣ୍ଣିତ । ସମ୍ବରେ—ଅଡ଼ମ୍ବରରେ । ଗନ୍ଧର୍ବସତ୍ତ୍ୱା—ଗନ୍ଧର୍ବ ଗୁଣଯୁକ୍ତା ନୃତ୍ୟ ଗୀତାଦିରେ ନିପୁଣ ।

ଆବିଦ୍ଧ—କୁଟିଳ, ବଙ୍କା । ବନ୍ଧ—ଜୁଡ଼ାରେ ଫୁଲବନ୍ଧା । ଆରୋପ—ଖୋସିବା । କ୍ଷେପଣ—ମସ୍ତକରେ ଫୁଲ ବୃଷ୍ଟି ଇତ୍ୟାଦି । ନିପାତିତଦୃଷ୍ଟା—ଅଳ୍ପରେ ପଡ଼ୁଛି ଆଖିପତା ଯାହାର ନିଞ୍ଚ ଈଷଦର୍ଥରେ ପ୍ରଯୁକ୍ତ । ନିର୍ନିମେଷ—ନିସ୍ପନ୍ଦ ହେଲେ ଶୋଭାର ହାନିହେବ । ଅପୂର୍ବାଲସା—ମନୋହର

ଆଳସ୍ୟ ଯାହାର, ଯଥା :—ମଦାଳସା । ସୁଭଗା ସୁନ୍ଦରୀ । କନ୍ଦର୍ପକେଳି କଳାଲାଳସୀ—ରତିକୁତୂହଳୀ । ଭର୍ତ୍ତୃଚେତା—ଯୋଗୀ । ବକ୍ରବାଣୀ ଶ୍ଳେଷୋକ୍ତି, ଦୁଇ ଅର୍ଥ ଥିବା କଥା । ଜଗନ୍ମୋହନ—ଜଗତକୁ ମୋହନ କରିବା । ଖଞ୍ଜନ—ଶୁକ୍ଳକାଳୀକାପକ୍ଷୀ । ରଣରଣକ—କନ୍ଦର୍ପ ଭାବ ଭାର—ରତ୍ନାକର ୨ । ଭାର ଅନ୍ତ ଉଚ୍ଚ ଶବ୍ଦ । ହାବ ଭାବ, ଅନୁଭାବ—ଶୃଙ୍ଗାରର ଚେଷ୍ଟାମାନ ଭାବ—ଅବିକୃତ ଚିତ୍ତରେ ରସଜନକ ପ୍ରଥମ ବିକୃତି । ଯୌବନର ଅବିର୍ଭାବରେ ମନର ଅନ୍ୟ ପ୍ରକାର ଅବସ୍ଥାକୁ ଭାବ କୁହାଯାଏ । ହାବ—ଭ୍ରୂ, ଚକ୍ଷୁ ପ୍ରଭୃତିର ବିକାରରେ ସମ୍ଭୋଗର ଇଚ୍ଛା ପ୍ରକାଶ କରିବା ଭାବକୁ ହାବ କୁହାଯାଏ ଅନୁଭାବ—ନିଜର ମନୋଗତଭାବକୁ ସାକ୍ଷାତ୍ ଯେଉଁମାନେ ପ୍ରକାଶ କରନ୍ତି ସେମାନଙ୍କୁ ଅନୁଭାବ କୁହାଯାଏ ଯେପରି ଭ୍ରୂଭଙ୍ଗ କୋପର ବ୍ୟଞ୍ଜକ । ମୁଗ୍ଧା—ପ୍ରଥମାବତୀର୍ଣ୍ଣଯୌବନମଦନ ବିକାରା ରତୌ ବାମା କଥିତା ମୃଦୁଶ୍ଚମାନେ ସମଧିକଲଜ୍ଜାବତୀ ମୁଗ୍ଧା ॥ ପହିଲେ ଯାହାର କାମ ଭାବ ଜନ୍ମିଛି ଯେ ରତି ପ୍ରତି ପ୍ରତିକୂଳା ସ୍ୱାମିଠାରେ ଅଳ୍ପମାନ ଅଧିକା ଲଜ୍ଜାବତୀ ସେ ସେ ମୁଗ୍ଧା । ମଧ୍ୟା—ମଧ୍ୟା ବିଚିତ୍ରସୁରତା ପ୍ରରୂଢ଼ସ୍ମରଯୌବନା । ଈଷତ୍ ପ୍ରଗଲ୍ଭବଚନା ମଧ୍ୟମବ୍ରୀଡିତା ମତା ॥ ପ୍ରଗଲ୍ଭା—ସ୍ମରାନ୍ଧା ଗାଢ଼ତାରୁଣ୍ୟା ସମସ୍ତରତକୋବିଦା । ଭାବୋନ୍ନତା ଦରବ୍ରୀଡ଼ା ପ୍ରଗଲ୍ଭାଽକ୍ରାନ୍ତନାୟିକା ॥ କାମରେ ଅନ୍ଧ ପୂର୍ଣ୍ଣ ଯୁବତୀରତିରେ କୁଶଳା, ଭାବପ୍ରବଳା ଅଳ୍ପ ଲଜ୍ଜାଶୀଳା, ସ୍ୱାମୀକୁ କବଳରେ ରଖିବା ସ୍ତ୍ରୀକୁ ପ୍ରଗଲ୍ଭା କହନ୍ତି । କଳା କଳାପୀ—କଳା ଚଉଷଷ୍ଠି କଳା, କଳାପ ସମୂହ; ଚଉଷଠି କଳା କୁଶଳା ।

ମଞ୍ଜିଷ୍ଠା—ଅହାର୍ଯ୍ୟୋଽନନ୍ୟ ସାପେକ୍ଷୋ ଯଃ କାନ୍ତ୍ୟା ବର୍ଦ୍ଧତେ ସଦା ।
ଉତ୍ପେନାଞ୍ଜିଷ୍ଠରାଗୋଽସୌ ସାଧ୍ୟାସାଧବଯୋର୍ଯଥା ॥ ଯାହାର ରଙ୍ଗ

।

ନଷ୍ଟ ହୁଏ ନାହିଁ, ସବୁଅଂଶରେ ସମାନ, ଜନର କାନ୍ତିରେ ବୃଦ୍ଧିପାଏ ତାହା ମଞ୍ଜିଷ୍ଠା ରାଗ । କୁସୁମ=କୁସୁମ୍ଭ :—କୁସୁମ୍ଭ ରାଗାସ୍ତ କ୍ଷେତ୍ରୋ ଯନ୍ତିତ୍ରୁ ସଲ୍ଲକ୍ଷତ୍ରୁ ତଃ । ଅନ୍ୟରାଗଚ୍ଛବିବ୍ୟଞ୍ଜୀ ଶୋଭତେ ତ ଯଥା ଯଥଂ ଯେ ସଂଯୋଗରେ ତନ୍ତୁରେ ଲାଗିଯାଏ ଓ ଅନ୍ୟ ଭାବକୁ ପ୍ରକାଶ କରେ ତାହା କୁସୁମ୍ଭ । ରଣ ରଣକ—କାମଦେବ । ଗତ ନଧାନ—ମୋକ୍ଷର କାରଣ । ସିଦ୍ଧରଙ୍ଗରେ-ସଂନ୍ଧ ଦର୍ଶାରେ ପାଠ ଧର୍ମୀଚୀନ ॥ ପ୍ରତିକୂଳ—ବିପରୀତ ହେବ ।

---

## ଚତୁର୍ଥ ଛାନ୍ଦ

ଅବ—ଶେଷ, ସଙ୍କର୍ଷଣ । ମୀନକେତନ—ବିଷ୍ଣୁଙ୍କ ପାଦରେ ମତ୍ସ୍ୟ ଓ ପତାକା ଚିହ୍ନ ଅଛି । କାମଦେବଙ୍କ ପକ୍ଷରେ ମତ୍ସ୍ୟ ହୋଇଅଛି ଧ୍ୱଜ ଯାହାଙ୍କର । ଅର୍ଦ୍ଧଚନ୍ଦ୍ର ଧର—ବିଷ୍ଣୁଙ୍କ ପାଦରେ ଅର୍ଦ୍ଧଚନ୍ଦ୍ରର ଚିହ୍ନ ଅଛି ମହାଦେବଙ୍କ ଶିରରେ ଅର୍ଦ୍ଧଚନ୍ଦ୍ର ଥାଏ । ମହାଭୂତିଦ ତା—ମହା ଐଶ୍ୱର୍ଯ୍ୟ ଦାତା । ମହା ଭୂତଗଣ—ବଡ ବଡ ଭୂତମାନେ ତାଙ୍କର ଆଜ୍ଞାରେ ଥାଆନ୍ତି । ବିଷ୍ଣୁପକ୍ଷେ—ମହା ପ୍ରାଣୀଙ୍କର । ମନ୍ଦାକିନୀରେ ସ୍ପୃଶୋ ଉତଃ—ମହାଦେବଙ୍କ ଶିରରେ ଗଙ୍ଗା ଓ ବିଷ୍ଣୁଙ୍କ ପାଦତଳେ ଗଙ୍ଗା ବହୁ ଅଛନ୍ତି ଅଙ୍କୁଶ—ଗଣେଶଙ୍କ ହସ୍ତରେ ଓ ବିଷ୍ଣୁଙ୍କ ପାଦଚିହ୍ନ ବିଶେଷ । ବଜ୍ର—ଇନ୍ଦ୍ରଙ୍କ ଆୟୁଧ, ବିଷ୍ଣୁଙ୍କ ପାଦ ଚିହ୍ନ । ସୁମନସ—ଦେବତାମାନେ ଓ ବୁଦ୍ଧିବନ୍ତ ଲୋକେ । ଚକ୍ରେ—ମଣ୍ଡଳ ଓ ସୁଦର୍ଶନ ଚକ୍ର । ଶଙ୍ଖ ପଦ୍ମ ନିଧି—ବରୁଣଙ୍କ ଭଣ୍ଡାରରେ ଶଙ୍ଖ ପଦ୍ମ ନିଧି ଥାଏ; ଶଙ୍ଖ ପଦ୍ମର ଆକାର ସମୁଦ୍ର ଓ ବିଷ୍ଣୁ ପଦଚିହ୍ନ ଦୁଇ ଗୋଟି । ଧ୍ୱଜ, କଳସ, ଅମ୍ବର—ପତାକା କଳସ ଓ ବସ୍ତ୍ର ବଡ଼ ରଥୀଙ୍କ ରଥରେ ଥାଏ; ବିଷ୍ଣୁଙ୍କ ପାଦର ଚିହ୍ନ ।

ଅମ୍ବର — ଆକାଶ । ଧନୁ — ବିଷ୍ଣୁଙ୍କ ପାଦର ଚିହ୍ନ ବିଶେଷ । ଊର୍ଦ୍ଧ୍ୱରେଖା ଯବ, ତ୍ରିକୋଣ ସ୍ୱସ୍ତିକ, ଅଷ୍ଟକୋଣ ଓ ବଜ୍ର — ମହାପୁରୁଷଙ୍କ ଠାରେ ଥାଏ, ଓ ବିଷ୍ଣୁଙ୍କର ପାଦଚିହ୍ନ ମାନ । ମୁନି ମାନସ ମାନସ ମାନସରେ — ମୁନିମାନଙ୍କ ମନର ମନ ରୂପକ ମାନସରୋବରରେ । କମଳା — ଲକ୍ଷ୍ମୀ । ଅଷ୍ଟ ଐଶ୍ୱର୍ଯ୍ୟ — ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ଈଶିତା, ବଶିତା. କାମାବସାୟିତା । ତରଣି — ନୌକା । ବାରଣ — ହସ୍ତୀ । ପାଷାଣ ହୋଇଥିବା ଅବଳା — ଅହଲ୍ୟା । ଧର୍ମ ନନ୍ଦନ — ଯୁଧିଷ୍ଠିର । କାଠରୁ ବଜ୍ର ଅଙ୍ଗ - ଶାଳଗ୍ରାମ । ଅହଲ୍ୟା — ଦାଉ । ମାତ୍ର ମାର୍ଜାର—କାଣିଜଲ ସାପ

---

## ପଞ୍ଚମ ଛାନ୍ଦ

କଉପ—ଶୀତଲୁଗା ବିଶେଷ । ଅଙ୍ଗରକ୍ଷା—ଶରୀରକୁ ରକ୍ଷା କରିବା । ହିମାଣୀ—ତରୁଣୀ । ଘୋଡ଼—ଆଚ୍ଛାଦନ । ନଘୋଡ଼ କର= ନିବୃତ୍ତ କର । ଶ୍ରୀକର୍ପୂର ଶବ୍ଦ ଉଚ୍ଛ=ଯୋଗ କରିଲେ — ଲଗାଇ ବା କର୍ପୂର ସେବା କରାଇ । ଉଚ୍ଛ ସୁମନ ଗନ୍ଧେ କାହା କବରୀ ସାଜିବ ଭ୍ରମ ଗନ୍ଧୁରୀ—ପ୍ରମଦ୍ୟାନଥି । ଗଉଛି—ଦେହରେ ଲୁଗା ଗୁଡ଼ାଇ ପିନ୍ଧାଇବା । କବାଇ—ଝାରପୋଷାକ ବିଶେଷ । କମ୍ବୁରଥ ଚରଣ —ଶଙ୍ଖ ଓ ଚକ୍ର । କାଙ୍ଗୀର—କୁଙ୍କୁମ । ଉଜ୍ଜ୍ୱଳ—ପତାକା । ଭ୍ରସଳ —ଭଅଁର । ମହାପାପୀ ପାପଘ୍ନୀ — ମହାପାପୀର ପାପକୁ ନାଶ କରନ୍ତି ଅଚିନ୍ତ୍ୟ ଏହି ଅର୍ଥରେ ବ୍ୟବହୃତ । ଚନ୍ଦ୍ରାକୃତି ଶକଳ—ଚନ୍ଦ୍ରଖଣ୍ଡ ଭଳି ।

---

## ଷଷ୍ଠ ଛାନ୍ଦ

ରସାଳବକୁଳ—ଆମ୍ବଉଳ । ନବପଲ୍ଲବ—କଅଁଳଆପତ୍ର । କିଂଶୁକ—ପଳାଶଫୁଲ । ପାଠକରବାଳ—ହଳଖଣ୍ଡା । ଦ୍ୱିଜବର—

ବ୍ରାହ୍ମଣ ଓ ପକ୍ଷୀଶ୍ରେଷ୍ଠ । ଭ୍ରମର କଦମ୍ବ—ଭଅଁର ସବୁ । ମନମଥ—ମନମଥ—କନ୍ଦର୍ପର ମନକୁ ମନ୍ଥି ଦେଉଛୁ ଯେ ବେଶ । ବାରନାରୀ—ବେଶ୍ୟା । ମକରକେତନ—କନ୍ଦର୍ପ ।

୮—ପ୍ରାଭବ—ପରାଭବ । ଗିରିଜାବଲ୍ଲଭ—ମହାଦେବ । ନେତ୍ର ଅନଳ ପତଙ୍ଗ—କାମଦେବ । ପ୍ରସାଦେ—ଅନୁଗ୍ରହରେ । ପ୍ରହରଣ—ଶର, ଅସ୍ତ୍ର । ହଂସକ—ହଂସୁଲି-ପାଦର ଅଳଙ୍କାର ବିଶେଷ । ଶାତକୁମ୍ଭ—ସ୍ୱର୍ଣ୍ଣ । ଶଲକା—ବାଡ଼ । ସୁମମଣ୍ଡଳ—ପୁଷ୍ପ ସମୂହ । ବିତାନ—ଚାନ୍ଦୁଆ । ଫଗୁଣା—ଆନନ୍ଦରେ । ବାରଣବୃକ୍ଷ—କଦଳୀଗଛ । ସୁଧା—ଚୂନ । ଅମରପତିବଗ—ପୂର୍ବଦିଗ । ସବିତା—ସୂର୍ଯ୍ୟ । ତତ—ତାଳବାଦ୍ୟ ବିଶେଷ । ଆନକ—ଢକ୍କା ବିଶେଷ । ସୁଷିର—ବଂଶୀ ପ୍ରଭୃତି ବାଦ୍ୟ । ପଖାଉ—ଦୋଳ ହଲଇ । ଦନ୍ତିଦନ୍ତ ଦୋଳା—ହାତୀ ଦାନ୍ତରେ ନିର୍ମିତ । ପିଲେ—ଦେହରୁ ବାହାରିଥିବା ।

---

## ସପ୍ତମ ଛାନ୍ଦ

ଦିନକର କରେ—ସୂର୍ଯ୍ୟଙ୍କ କିରଣରେ । ଶୀର୍ଣ୍ଣିତର—ଶୁଖିଯାଆନ୍ତି । ସନ୍ତପନ୍ତି—ବିକଳ । ଆତପଯାତ—ଖରା ସ୍ଥାନରେ । ମଧ୍ୟପାଣ୍ଡବ—ଅର୍ଜୁନ, ଏଠାରେ ଅର୍ଜୁନ ବୃକ୍ଷ । ସୁମନ—ଫୁଲ । ତୃଣଧ୍ୱଜ ବାଉଁଶ । ସଂପତ—ସମୂହ । କମଲ—ଜଳ । ଗନ୍ଧବହ ବଇରୁ—ମନ୍ମଥ । ପାଦପଙ୍କେ—ପଙ୍କ ସ୍ଥାନରେ । ବନ୍ଧୁପାଦ—ବୃକ୍ଷ । କର୍ପୂର ଚୂର୍ଣ୍ଣ ପଟନୀ—କର୍ପୂର ଦିଆ ହୋଇଥିବା ଲୁଗା । କବରୀ—ଜୁଡ଼ା । ଅଳକା—କପାଳରେ କେଶ ତଳକୁ ପଡ଼ିବା ଅଳଙ୍କାର ବିଶେଷ । ସୁନାଶୀର—ଇନ୍ଦ୍ର । ଆଶେ ପାଶେ—ଗୃହପାଖରେ । ବିଟଙ୍କ—ଉଚ୍ଚ ଆସନ । ଅପସର

— ବଡ଼ ମାଣ୍ଡି ବା ଡବଂଅ । ଚନ୍ଦ୍ରାଗୁରୁ—କର୍ପୂର ଧୂପ । ଦ୍ୟୁମୀକର—ସୁବର୍ଣ୍ଣ । କନ୍ଦର୍ପ ଦର୍ପବିମୋଚନୀ—କାମର ଗର୍ବନାଶକାରିଣୀ । ଭୁଜସୁନ୍ଦରଦକ୍ଷିଣା —ଭୁଜଫଳପର ସୁନ୍ଦର ଦାନ୍ତ ଯାହାର । ଅନ୍ବିତ—ଉପଯୁକ୍ତ । ହସ୍ତିକ —ହସ୍ତୀର ଅଧିନସ୍ଥ । ଶମଦମବଳେ—ଯୋଗୀର ଗୁଣ ବଳରେ । ଷଡ଼୍ଦୈତ୍ୟ—କୁତ୍ରକ୍ରମଅ ଯୋଦ୍ଧା । ବୃନ୍ଦାରକବୃନ୍ଦ—ଦେବତାମାନେ । ସେତାତପତ୍ର—ଧଳାଛତା । ଉପାସ—ଉପକରଣ ଛତ୍ର ବିଶେଷ ଯେଉଁ- ଥିରେ ଜ ପିତ୍ତଳ ବା ସୁନାର ଚନ୍ଦ୍ର, ସୂର୍ଯ୍ୟ ମଣ୍ଡା ହୋଇଥାଏ, ଯଥା— ସୀତ ଦରେ ଚନ୍ଦ୍ର, ସୂର୍ଯ୍ୟ ତପ୍ପରେ ସୁନ୍ଦର । ର, ପ । କଳାନ୍ତ—ଛୋଟ ଛୋଟ ପତାକା ବା କନା । ଚନ୍ଦ୍ର ଧୂପ—କର୍ପୂର ଧୂପ ବା ମଣ୍ଡୋର ଧୂପ । ଚନ୍ଦ୍ରଉଦପ୍ତା—ଚନ୍ଦ୍ରଙ୍କ ଅବସ୍ଥିତି । ରଙ୍ଗଭୂମି—ନୃତ୍ୟ ସ୍ଥାନ । ତ୍ରିବିତାପ- ଅଧ୍ୟାତ୍ମିକ, ଅଧିଦୈବିକ, ଅଧିଭୌତିକ ।

## ଅଷ୍ଟମ ଛାନ୍ଦ

ଚନ୍ଦ୍ର—କର୍ପୂର । ଫିଅଲ—ଖୋଲାଇ । ସିଦ୍ଧୁଅ—ଏକପ୍ରକାର ବସ୍ତ୍ର । ମାଦ୍ଧ୍ୱ—ମହୁରେ ତିଆରି ମଦ । ସିନ୍ଦୂର—ସିନ୍ଦୂର ବର୍ଣ୍ଣର । ଅମ୍ବର- ଲୁଗା ବା ଆକାଶ । ତାରତର—ଉଜ୍ଜ୍ୱଳତର । ଚଣ୍ଡ—ଅସୂର୍ଯ୍ୟ । ସୁକୃତି — ଦାନାଦିରେ ବଦାନ୍ୟତା ଯୋଗୁଁ ଖ୍ୟାତି ଲଭିଥିବା ଲୋକ । ଅନ୍ବିତ— ଉପଯୁକ୍ତ । ଅଗସ୍ତିମେଘ—ଅକଳଙ୍କା । ସନ୍ତତପନ—ସମୁଦ୍ର । ସନ୍ତାଉ ଚକ୍ର ବା ବାଦ୍ୟ ବିଶେଷ । ସୁରବନ୍ଦିନ—ଦେବତାଙ୍କ ରହିବା ସ୍ଥାନ । ଉର୍ମି ଉର୍ମିମା—ଛୋଟ ଢେଉ । ଅଘ—ପାପ । ଶର୍ବରୀ—ରାତ୍ରି ।

ଆରତ ଅଘବାରଣ ମନ୍ତ୍ରପାଶବନ୍ଧ—ଦୁଃଖ ଓ ପାପ ରୂପକ ହାତୀଙ୍କୁ ମାରୁଥିବା ସିଂହ—ଦୁଃଖ ଓ ପାପ ନାଶକାରୀ । ମାନବଙ୍କ ଗର୍ଭ— ମାନବର ପୁନର୍ବାର ଜନ୍ମ । ପଦ୍ମାକର—ପଦ୍ମପୂର୍ଣ୍ଣ ପୁଷ୍କରିଣୀ । ପରିହରଣ- ପରିଧାନ, ପିନ୍ଧା । ନିଗମ—ବେଦ । ଝଙ୍କାର—ସୁନ୍ଦର ।

## ନବମ ଛାନ୍ଦ

ମେଘପୁଷ୍ପ—ଜଳ । ସୁବାସ –ସୁଗନ୍ଧ; ମୁଖ ବାସ । ମଣ୍ଡୁରୁହ — ଗନ୍ଧ । ଇନ୍ଦ୍ରଗୋପ—ସାଧବଘର ବୋହୂ । ବଶିଖ–ଶର । ଶଲ୍ୟ— ଶେଲ । ଭଲ୍ଲ—ଭଲ୍ଲଅସ୍ତ୍ର । ଗ୍ରେଠ–ଘାତ । ମଂଘଠବପ୍ରକାଶ । ଚନ୍ଦ୍ରମୁକୁଟ–ମହାଦେବ । କେକୀ କେକଣୀ–ମୟୂର ମୟୂରୀ । କୃପୀଠ– ଜଳ । କମଳମସ୍ତ–ଜଳମସ୍ତ । ଫୂର–ପ୍ରକାଶି । ଷଡ଼ଜ–ଋଷଭ, ଧଇବତ, ମଧ୍ୟମ—ସପ୍ତ ସ୍ୱରରୁ ଗୃରସ୍ୱର । କଠକ–ବାସସ୍ଥାନ । ମକରଧ୍ୱଜ—କନ୍ଦର୍ପ ; ଗୃର—ବନ୍ଧନ ବା ବଶ । କୁଠଜ--କୋରେଇ ଫୁଲ । ଅକଙ୍କ ବରସ୍ତ୍ରୀ—କାମାତୁର । ପ୍ରଧାନରସ–ଶୃଙ୍ଗାର । ଭଳ – ବହଲ ହେବାକୁ । ବୃଭୁବନ୍ତ ନା ବଳ – ପୁଷ୍ପମାନଙ୍କର ନାମସମ୍ବନ୍ଧ । ପାରୀନ୍ଦ୍ର– ସିଂହ । ଲହରୀସ୍ତୁତ—ଲହରେଇ କର ସ୍ତୁତ କରିବା ବା ବଡ଼ସ୍ତୁତ, ଅନନ୍ଦଲହରୀ ପ୍ରଭୃତ । ଦଶ ଚଉର ଲେକେ—୧୪ବ୍ରହ୍ମା- ଣ୍ଡରେ । ସୃଷ୍ଟ–ବାଂଠ । ଠମାଲ=ପରହାସ । ସାଧବ–ସଉଦାଗର । ଅଗୃରଲୋକ –ବ୍ରାହ୍ମଣାଦ । ଦୟିତ—ସ୍ୱାମୀ । ଶ୍ଳେଷ–ଯୋଗ । ଉଦ୍ଧବେ--ହର୍ଷର ଅବେଗରେ । ଅଲଙ୍କାର--ଶରୀର ଶୋଭାଜନକ ଧର୍ମ ସମୂହ –ଭାବ ହାବ ପ୍ରଭୃତ ୨୮ ଗୋଟି ।

ପଞ୍ଚବଶିଖ ପଞ୍ଚଶରଙ୍କୁ କାର୍ମୁକ ପଞ୍ଚଜନମାନଙ୍କୁ ଅଙ୍ଗେ ଚଖାଇ– କନ୍ଦର୍ପ ଧନୁର ପାଞ୍ଚଶରଙ୍କୁ ( ଅରବନ୍ଦ ଅଶୋକ, ଚୂତ, ନବମାଲକା, ନୀଳୋତ୍ପଳ ) ଲୋକମାନଙ୍କ ଅଙ୍ଗେ ଅନୁଭବ କରାଇ । କଉମୁଦକ– କୃଷ୍ଣଙ୍କ ଗଦା । ରଥାଙ୍ଗ –ଚକ୍ର । ପଞ୍ଚଜନକ–ପଞ୍ଚଜନଦୈତ୍ୟଠାରୁ ଜାତ । ପାଞ୍ଚଜନ୍ୟ –ଶଙ୍ଖ ।

କୀରକେଦାର–ଅଲଙ୍କାର ବଶେଷ । ଶରଦପର୍ବ ଶର୍ବରୀପଡ଼–

ଶରତ୍ ପୂର୍ଣ୍ଣିମା ସ୍ୱଚ୍ଛ ରଜନୀର ଚନ୍ଦ୍ର । ଚନ୍ଦ୍ରମାକର—ଚନ୍ଦ୍ରକିରଣ । ତୁଷାର—ହିମ । କ୍ଷୀର—ସମୁଦ୍ର ଫେଣ । ଅରୁଣ—ସୂର୍ଯ୍ୟ ଲାଲବର୍ଣ୍ଣ । ଅବଲନା ନ କର—ସମ୍ଭାଳ ନ ପାରଇ । ହେମ ଶତପତ୍ର—ସୁନା ପଦ୍ମ । ଅଜ୍ଞାତ ପତ୍ର ବନ୍ଧବ ରଥଘୋଡ଼—ପକ୍ଷୀ ଶାବକ । ଘୋଡ଼—ନଉକା । ବାରଣ—ହାତୀ । ବରୁଣ ସୁତା—ଲକ୍ଷ୍ମୀ । ଅରୁଣ ସୁତା ଛବ ଦୂଷଣ—ଯମୁନାର କଳା ବର୍ଣ୍ଣକୁ ଗଞ୍ଜୁଛି ।

## ଦଶମ ଛାନ୍ଦ

ଦୋସରୀ—ବାଦ୍ୟ ବିଶେଷ । ଶୁଷିର—ବଂଶୀ ପ୍ରଭୃତି ବାଦ୍ୟ ଗୋମୁଖ—ବାଦ୍ୟ ଯନ୍ତ୍ର ବିଶେଷ । ଶିଶୁପାଶ୍ୱାନ୍ତ, ମଧ୍ୟମା—ତୁଥ ଫିଙ୍ଗିବର କଣ୍ଠ ପରି କଣ୍ଠ ଯାହାର । କ୍ୱାନ୍ତେ—ଶୋଭିବେ, ଭ୍ରମଣିରେ । ଅବିଶ୍ୱ—କୁତୂହଳ । ଅମୃତଦାନୀ—ମୋକ୍ଷ ଦାତା, ଜଳଦାତା । ଅନନ୍ତ ଅଙ୍କବିହାରୀ—ଅନନ୍ତଶଯ୍ୟା, ଅନନ୍ତ ସର୍ପର କୋଡ଼ରେ ଶୟନ କରନ୍ତି । ଚପଳା—ଲକ୍ଷ୍ମୀ, ବିଜୁଳି । ଅନାଥ ଚକ୍ଷୁ ଅରବିନ୍ଦ—ଅନାଥ ଲୋକମାନେ ହେଲେ ପଦ୍ମ । ଘନ ଉପରେ—ଜଳରେ ବା ଶୃଙ୍ଗାରରେ । ପତ୍ରରଥ ପତି—ପକ୍ଷୀମାନଙ୍କର ରଜା । କଶ୍ୟପ ନନ୍ଦ—ଗରୁଡ଼ । ଅନନ୍ଦ କରନ୍ତୁ—ଶୀତଳ କରଣରୁ, ଆନନ୍ଦ ପ୍ରଦାନକାରୀ ହେବୁ । ଅମୃତକର—ଅମୃତ କିରଣ ଯାହାଙ୍କର । ବିଷ୍ଣୁପକ୍ଷେ—ମୋକ୍ଷକର । ତାରକ ମଣ୍ଡନ—ଚନ୍ଦ୍ର ତାରାଙ୍କ ଦ୍ୱାରା ମଣ୍ଡିତ; ବିଷ୍ଣୁପକ୍ଷେ ତାରକା—ହାରରେ ଭୂଷିତ । ତମ ବିଖଣ୍ଡନ—ଅନ୍ଧକାର ଦୂର କରନ୍ତି, ଅଜ୍ଞାନ ନାଶ କରନ୍ତି । କମଳାଙ୍କ—କମଳ ଯେ ହରିଣ ଅଙ୍କରେ—କୋଡ଼ରେ ଯାହାଙ୍କର । କମଳାଙ୍କ—ଲକ୍ଷ୍ମୀଙ୍କ କୋଡ଼ରେ । ବିଧୁ—ଚନ୍ଦ୍ର, ଓ ବିଷ୍ଣୁ । ନନ୍ଦଘୋଷ ଉଦୟେ—ନନ୍ଦଘୋଷ ହେଲା ଉଦୟ ପର୍ବତ । ଅଘ ଅନ୍ଧକାର—ପାପରୂପ ଅନ୍ଧାର ।

( ଏଠାରେ ପଦେ ଛଡ଼ା ଅଛି )

ଏତେ ନିର୍ମଳ ହୋଇ ଯେ ନ ଦଶନ୍ତି ମହାଗଗନବାଟ ମଣି ।
ଆନନ୍ଦଜଳଧି ନ ଉଚ୍ଛୁଳ ନେତ୍ର ଚକୋର ନ ହନ୍ତି ସୁଖୀ ॥

ମହାଗଗନବାଟ – ଚନ୍ଦ୍ର, ଆକାଶ ମାର୍ଗ ଯାହାଙ୍କର ମୋକ୍ଷ ବାଟ ଯେ ରଶ୍ମି । ଆନନ୍ଦରୂପ ସମୁଦ୍ର—ନେତ୍ରରୂପ ଚକୋର, ଚକୋର ଚନ୍ଦ୍ରରେ ଯେପରି ସୁଖୀ; ଲୋକଙ୍କ ନେତ୍ର ଜଗନ୍ନାଥଙ୍କ ଠାରେ ସେହିପରି । ହୃଦସ୍ଥ ଚନ୍ଦ୍ର କାନ୍ତକ୍ତି – ହୃଦସ୍ଥ ହେଲା ଚନ୍ଦ୍ରକାନ୍ତମଣି – ଚନ୍ଦ୍ର ଚନ୍ଦ୍ରକାନ୍ତ ମଣିକୁ ଦ୍ରବାଏ ସେହିପରି ଏ ଜଗନ୍ନାଥ ହୃଦୟକୁ ଦ୍ରବୀଭୂତ କରନ୍ତି । କର କମଳ – ହସ୍ତରୂପ ପଦ୍ମ । ଧନହସ୍ତ ଅଭ୍ର କାହିଁକି ନ ଦେବାରେ ବୁଜ ହୁଅନ୍ତି । ଶୋକ ରଥାଙ୍ଗ – ଶୋକ ଯୁକ୍ତ ଚକ୍ରବାକ; ଗୁଣ୍ଡିଚା ଘରରେ ଓଲଟା ହେଲା ଚନ୍ଦ୍ର କିରଣରେ ପଦ୍ମ ମଉଳ ଯାଏ ଓ ରାତିରେ ଚକ୍ରବାକଙ୍କ ବିରହ ହୁଏ କିନ୍ତୁ ଏ ଉଜନାରେ ଜଗନ୍ନାଥ ଯେ ଚନ୍ଦ୍ର ତାଙ୍କ ଦ୍ୱାରା ଅଦ୍ଭୁତ ଫଳ ଫଳିଲା । ଚନ୍ଦ୍ର ଶୀତଭାନୁ ଉଜ୍ଜ୍ୱଳ ଦ୍ରବ୍ୟ କି ସ୍ୱେ ଦରଶନ ବାହାରେ – ସ୍ତ୍ରୀମାନଙ୍କର ମୁଖ ହେଲା ଚନ୍ଦ୍ର ସେଥିରେ ଚକ୍ଷୁ ହୋଇଛି ଉଜ୍ଜ୍ୱଳ ଏପରି ମିଳନ ବାହାରେ ଦେଖା ହେଉଛି । ପୁରାଙ୍ଗନା କଲାପ – ପୁରାଙ୍ଗନାମାନେ । ଘନାଘନ – ମେଘ ନନ୍ଦୀଘୋଷ ହେଲା ଆକାଶ । ଅମୃତ – ଜଳ ଓ ମୋକ୍ଷ । ବୃଷ୍ଟି କର – ଦାନକର । ଶିଖୀ – ମୟୂର, ଅନ୍ୟମାନେ ନାଚିବାରୁ ଶିଖୀ ନାଚୁ ଅଛନ୍ତି ।

୩୨ । ଘନେ......କାନ୍ତି—ମେଘରେ ବିଜୁଳିର ଶୋଭା ଖେଳୁଛି --ଲକ୍ଷ୍ମୀଙ୍କର ଶୋଭା ପ୍ରକାଶ ପାଉଛି । ହରିତ ଅମ୍ବର – ଗାଢ଼ ନୀଳ ଆକାଶ, ହଳଦିଆ ଲୁଗା । ଇନ୍ଦ୍ର ଶରାସନ–ଇନ୍ଦ୍ରଧନୁ । ପ୍ରଭା –ଶୋଭା । ମହା ସମ୍ବରେ – ମହା ଆଡ଼ମ୍ବରରେ । ନନ୍ଦିଘୋଷ ଅମ୍ବରେ – ନନ୍ଦିଘୋଷ ରୂପ ଆକାଶରେ – ଏ ଘନ – ମେଘ ବର୍ଣ୍ଣିର ଜଗନ୍ନାଥ । ମେଘ ପ୍ରକାଶରେ କଦମ୍ବ ଫୁଲ ଫୁଟେ ଏହାଙ୍କ ପ୍ରକାଶରେ ପୁଲକ କଦମ୍ବ –

ଫୁଲକ ସମ୍ବନ୍ଧ ଶରୀର ରୋମାଞ୍ଚିତ ହୁଏ । ଇନ୍ଦ୍ରଗୋପ — ସାଧବ ଘର ବୋହୁ । ରଙ୍ଗ ବସନା — ନାଲ ଲୁଗା ପିନ୍ଧିଲା ସ୍ତ୍ରୀମାନେ ହେଲେ ସାଧବ ବୋହୁ । ସାଧବ ବୋହୁ ପୃଥିବୀ ଫଟାଇ ବାହାର ହୁଏ — ଏମାନେ ପୃଥିବୀର ଲୋକମାନଙ୍କ ହୃଦୟ ଭେଦ କରୁଛନ୍ତି । ଅଙ୍କୁର ମଧ୍ୟ — ସାଧବ ବୋହୁ ରଙ୍ଗବସନା — ଲାଲ ଲୁଗାର ଘୋଡ଼ଣି ଦେଇଅଛି । ଆନନ୍ଦର କନ୍ଦ—ଆନନ୍ଦର ମୂଳ କାରଣ । ଚଇତ୍ର ରଥ — ଚୈତ୍ରରଥ — କୁବେରଙ୍କ ଉଦ୍ୟାନ । ନନ୍ଦନ — ଇନ୍ଦ୍ରଙ୍କ ଉଦ୍ୟାନ । ଆରାମ— ଉଦ୍ୟାନ, ଉପବନ । ଉପଯୋଗ—ଲାଗି । ସୁମନ—ଫୁଲ ।

ଚଞ୍ଚଳା—ଲକ୍ଷ୍ମୀ । କେ ବୋଲେ······ଅନ୍ତର୍ଗତ—ହୁଧରେ ଘିଅଥିଲା ପରି, ଜଗନ୍ନାଥ ହେଲେ ଶକ୍ତିମାନ୍ ତାଙ୍କର ଶକ୍ତି ଲକ୍ଷ୍ମୀ ତାଙ୍କଠାରେ ଅଛନ୍ତି । ଶ୍ରୁତିରେ—ବେଦରେ । ତତ୍ପକର—ଇନ୍ଦ୍ର ଇନ୍ଦ୍ର କରଣ ପାତ । ହେତୁ — କାରଣ । ଯାମିନୀ—ସ୍ତ୍ରୀ । କାନ୍ତ କାନ୍ତ—ସୁନ୍ଦର ସ୍ୱାମୀ । ଭୂଷଣ—ଅଳଙ୍କାର । ଏତାଙ୍କର·········ଛଇ । ଲକ୍ଷ୍ମୀଙ୍କ ନାମରେ କ—ଶୋଭାରେ ଛଇ ହୋଇଛି । ଅନ୍ନ—ଲୋହ ଗୁଣ୍ଡି । ରସନା — କଟିମେଖଳା । ମଣ୍ଡନ — ଭୂଷଣ । ସୁଖଧାମ — ସୁଖର ସ୍ଥାନ । ପଦ୍ମଆଖି — ଜଗନ୍ନାଥ । ଲୋକେ — ସଂସାରରେ ।

୪୬ । ଘନସାର ଅଙ୍ଗ—ମେଘ ହୋଇଛି ସାର ଯାହାର ଏପରି ଅଙ୍ଗ ଯାହାଙ୍କର । ବରୁଣ ନନ୍ଦିନୀ — ବାରୁଣୀ ମଦ୍ୟ । ବରୁଣ ନନ୍ଦିନୀ —ଲକ୍ଷ୍ମୀ । ଘନସାର ତନୁ—କର୍ପୂର ସଦୃଶ ଶରୀର ।

୪୩ । ଚିତ୍ରରଥ ଗନ୍ଧର୍ବ ଗାୟକ ହୋଇ ଇନ୍ଦ୍ରଙ୍କ ପାଖରେ ଗାଏ । ଏଠାରେ ମନୋହର ଓ ଘୋଡ଼ା ଏବଂ ଗାୟକ ଦେବରାଜ କ କ ଜଗନ୍ନାଥଙ୍କ ସମ୍ମୁଖରେ ଗାଏ ।

୪୪ । ପଦ୍ମଆସ୍ୟ — ନିଯୋଗୀ । ସ୍ରକ — ମାଳା । ବନିତା — ସ୍ତ୍ରୀ ସ୍ୱର୍ଗରେ ଦେବତାମାନେ ଖଟଣିରେ ଅଛନ୍ତି — ଫୁଲମାଳା, ଚନ୍ଦନ ଓ

ଦେବନାରୀମାନଙ୍କୁ ଭୋଗ କରନ୍ତି । ଏଠାରେ ମଧ ତାହା ଅଛି ଏଠାରେ ବ୍ରହ୍ମାଦି—ବ୍ରହ୍ମାବରହିରେ ଥିବା ବ୍ରାହ୍ମଣ ଓ ଅନାନ୍ୟ ଦେବତାମାନେ ବ ବ୍ରାହ୍ମଣମାନେ ।

୪୬ । ଯାନ୍ତ୍ରୀ ସମୁଦ୍ର ପରି । ଏଠାରେ ରଥଂର ସବୁ ଲକ୍ଷଣ ସଙ୍ଗେ ସମାନ । ସିନ୍ଧୁର—ହସ୍ତୀ, ଅଶ୍ୱ, ମକର, ଶିଶୁମାର ମୂର୍ତ୍ତି ସବୁ ଯାହାରେ ବନ୍ଧି ନମନ୍ତ୍ରେ ଅଛି ।

୪୭ । ରଥ ଏଠାରେ ବୋଇତ । ପାଟ ପତକା ନେତ ଏସବୁ ବୋଇତରେ ପାଲ ପରି ।

୪୮ । ସାଧବ—ବଣିକ, ନୌବ୍ୟବସାୟୀ । ମାଧବ—ବିଷ୍ଣୁ । ନହା ସମ୍ଭରେ—ମହା ଆଡମ୍ବରରେ । ଚତୁର୍ବର୍ଗ—ଧର୍ମ, ଅର୍ଥ, କାମ, ମୋକ୍ଷ । ଶ୍ୱେତଦ୍ୱୀପ—ମହା ବିଷ୍ଣୁଙ୍କ ସ୍ଥାନ । "ସହସ୍ରପତ୍ରକମଲଂ ଶ୍ୱେତଦ୍ୱୀପାଖ୍ୟମଦ୍ଭୁତମ୍' ବ୍ରହ୍ମସଂହିତା ।

୫୦ । ଅମ୍ବୁଜ···ସୁନ୍ଦର । ଚନ୍ଦ୍ରଶିର—ମହାଦେବ, ତାଙ୍କ ଗେହ କୈଲାସ—ତାହାର ମଧଭାଗକୁ ସ୍ୱର୍ଣ୍ଣ କଳ୍ପ ମେଘପରି ସୁନ୍ଦର । କାମପାଳ ଯେ ବଳରାମ ତାଙ୍କ କଣ୍ଠକରେ କଣ୍ଠରେ ରାମକୃଷ୍ଣ ବାସସାର ସୁନ୍ଦର କଳା ଭଲ ଲୁଗା ଦେଖ ।

୫୧ । ଅରୁଣ·····ଆକୃତି—ନୀଳପଦ୍ମର କୋଡ଼ରେ ଭଅଁର ପରି ଆକ୍ଷିର ଶୋଭା—ଆଖି ନୀଳ ଓ କଳା ଡୋଳା ଭଅଁର ପରି । ବରୁଣ ନନ୍ଦନୀ—ବାରୁଣୀ ମଦ୍ୟ ପାନରୁ ସେ ଆଖି ମାତ୍ରିପଡ଼ୁଛି ।

୫୨ । ରେବତୀ···ହଳମୂଷଳ । ବଳଦେବଙ୍କସ୍ତ୍ରୀ ରେବତୀ, ତାଙ୍କ କୁଚରେ ଲେପ ଦେବାରେ ପଟୁ ଯେଉଁ ହସ୍ତ—ସେଥିରେ ହଳ ମୂଷଳ ତାଙ୍କ ଦେହରେ ଅନେକ ଧଳା ଫୁଲମାଳ ଥିବାରୁ ଦୁଧସମୁଦ୍ର ତେଉ ପରି ଦେଖା ଦେଉଅଛି ।

୫୩ । ଦନ୍ତବକ୍ର ଅସୁରର ଦାନ୍ତ ଭାଙ୍ଗି ତାକୁ ମାରିଥିଲେ—ଏହି ବଳରାମ ତାହାର ଦାନ୍ତ ଭାଙ୍ଗି ତାକୁ ମାରିଥିଲେ । ଧର୍ମରାଜ-ଯମ, ତାହାର ଭଉଣି ଯମୁନା—ତାକୁ ଲଙ୍ଗଳରେ ଆକର୍ଷଣ କରିଥିଲେ । ୫୪ । ସହସ୍ରମୁଖ—ଅନନ୍ତସର୍ପ, ବାସୁକିର ହଜାର ମୁଣ୍ଡ । ୫୭ । ସୋରେହା—ଶବ୍ଦ । ସ୍ପୃହା—ଲାଳସା । ଫାଇ—ବେଣ୍ଟ ଫୁରୁଣା—ମନ ହର୍ଷରେ । ୬୦ । ରମ୍ଭାଫଳ— କଦଳୀ । ଚନ୍ଦ୍ର—କର୍ପୂର । ୬୧ । ଗଙ୍ଗାବାଣ ପଯୁପେଠୀ—ଗଙ୍ଗାବାଣ ନାମକ ଜାତିଏ ନଡ଼ିଆର ପଇଡ଼ । କୃଷ୍ଣ—ଗୋଲମରିଚ । ଚନ୍ଦ୍ର—କର୍ପୂର । ୬୨ । ପରମଗଳ—ଦୁଗ୍ଧରେ ପ୍ରସ୍ତୁତ ପଦାର୍ଥ ବିଶେଷ । ୬୫ । ଦେବା କଥାରେ ସମ୍ପୃ ନାହିଁ—ସର୍ବଦା ଦଅ ଲାଗିଛୁ । ଚତୁର୍ବର୍ଗ ହି ଦଶେ ହାଉନ—ଭାବରେ ଭକ୍ତର ବାଞ୍ଛା ପୂର୍ତ୍ତି କରିବା ତୁଳନାରେ ଚତୁର୍ବର୍ଗ ଦାନ କିଛି ନୁହେଁ । ୬୭ । ପ୍ରହରଣ—ଆୟୁଧ । ୬୮ । ଅଟେବନ୍ତ ପଣ—ଅତି ବଡ଼ପଣ । ୭୦ । ବଦରୀ—ବରକୋଳି । ଅଶେ—ଆଶାକଲେ । ମଚ୍ଛକା—ମାଛ । ଦୁର୍ବାସନା—ମନ୍ଦରୁଚି, ଦୁର୍ବାସନା—ଦୁର୍ଗନ୍ଧ ।

## ଏକାଦଶ ସ୍କନ୍ଧ

୧ । ସମ୍ଭବରେ—ଆଡ଼ମ୍ବରରେ । ବିଷ୍ଣୁପଦେ—ଆକାଶରେ, ବୃନ୍ଦାରକ ବୃନ୍ଦ—ଦେବତାମାନେ ।

୨ । ପ୍ରମୋଦ—ହସ କୌତୁକ । ସୁନାସୀର—ଇନ୍ଦ୍ର । ସୁନାସୀର ଠାରୁ···ପିଅନ୍ତି—ଏଠାରେ ଦେବତା ଓ ଅସୁରମାନଙ୍କର ବିରୋଧ ନାହିଁ ।

୩ । ବେଦଶ୍ଳୋକ—ଦୁଇଜଣ ଲେଖାଁ ।

୫ । ସେନା—ସେନା ପଠା, ଉଲ୍ଲଙ୍ଘି—ଓହ୍ଲାଇବା ।

୬ । ସୁରମ୍ୟତା—ସୁସ୍ୱାଦୁ । ଭକ୍ଷ୍ୟ—ଅନ୍ନ । ପର ପ୍ରମାଦୀ—ଶତ୍ରୁ ନାଶକାରୀ ।

୭ । ଚଞ୍ଚଳା-ଲକ୍ଷ୍ମୀ । ଗୁଣ୍ଡିଚା ମଣ୍ଡପରେ ଲକ୍ଷ୍ମୀ ନାହାନ୍ତି । ଅତନୁ—କାମ ।

୮ । ବସୁନ୍ଦର—ଶ୍ୱେତ ।

୯ । ଦିନବନ୍ଧୁ—ସୂର୍ଯ୍ୟ । ସକାଳ ସୂର୍ଯ୍ୟ ଉଦୟରେ ଯେପରି ପଦ୍ମ ପ୍ରସ୍ଫୁଟିତ ହୁଏ । ଏଠାରେ ଜଗନ୍ନାଥଙ୍କ ଦର୍ଶନରେ ତାଙ୍କର ଶ୍ରୀମୁଖ ପଦ୍ମ ପ୍ରସ୍ଫୁଟିତ ହେଲା । ଚକ୍ରବାକ—ଚକ୍ରଆ ପକ୍ଷୀ—ଚକୁଆ ପକ୍ଷୀ ସ୍ତ୍ରୀଯୁ ପରିଲୀତ ଅଶାରେ ସକାଳେ ଆନନ୍ଦିତ ହୁଏ, ସେହିପରି ଚକୁଆ ରୂପ ଲୋକମାନଙ୍କର ମନ ଜଗନ୍ନାଥଙ୍କ ଦର୍ଶନରେ ଖୁସି ହେଲା । ଷୀରାବ୍ଧିପତି-ନାରାୟଣ ।

୧୦ । ସ୍ୱାଦୁ—ମାଧୁରୀ ।

୧୧ । ବାରନାରୀ—ବେଶ୍ୟା ।

୧୨ । ଅମ୍ବର—ବସ୍ତ୍ର ।

୧୩ । ଉରଜ—ସ୍ତନ ।

୧୪ । ନାଗର—ଶୁଣ୍ଠି, କୃଷ୍ଣ—ଗୋଲମରିଚ, ଚନ୍ଦ୍ର—କର୍ପୂର ପ୍ରଚ୍ଛନ୍ନ—ଛବି, ମେଘ ଅଙ୍ଗରୁ ଯେପରି ବିଜୁଳି ଅଲଗା ନୁହେଁ, ସେହିପରି ଜଗନ୍ନାଥଙ୍କଠାରୁ ଲକ୍ଷ୍ମୀଙ୍କ ମୂର୍ତ୍ତି ଅଭେଦ ଅର୍ଥାତ୍ ଭିନ୍ନ ନୁହେଁ ।

୧୫ । ବି—ଅଭାବ-ବିଧୁ-ବସ୍ତୁ-ବସ୍ତୁ ନ ଥିବାରୁ ଚନ୍ଦ୍ରରେ ଭାବ ଅର୍ଥାତ୍ ପ୍ରୀତି ହେଉନାହିଁ । ବସ୍ତୁ ନଥିବାରୁ ଲକ୍ଷ୍ମୀଙ୍କୁ ଚନ୍ଦ୍ର ମଧ ଭଲ ଲାଗୁ ନାହାନ୍ତି । ବିଧୁରତା—କ୍ଲେଶ । ବିଧୁସରାଗୀ—ବସ୍ତୁ ସରାଗୀ, ଲକ୍ଷ୍ମୀ । ବଇରାଗେ—ବୈରାଗ ଭାବରେ । ବିଧୁ—କର୍ପୂର, ଶ୍ରୀଖଣ୍ଡ—ଚନ୍ଦନ

୧୬ । ବରଷା…………………ଜଗତଗୋ—

ବର୍ଷାକାଳରେ ଲକ୍ଷ୍ମୀଙ୍କ ବସ୍ତ୍ର ଛାଡ଼ ଯାହାରେ ଗଳି ଯିବାରୁ ଜଗତ ଲୋକମାନଙ୍କ ଆନନ୍ଦ ଦେଲେ । ସୁଖଗ୍ରାହି ବସ୍ତ୍ର ପ୍ରକୃତରେ ପ୍ରବାସୀ ହେଲେ ସୁଖ ଅର୍ଥାତ୍ ବର୍ଷା ଦୂର ହେଲେ ଦୁଃଖଗ୍ରାହି ହୁଏନାହିଁ ବମ୍ବା ଜଗତର ଆନନ୍ଦ ନ ଥାଏ, ବର୍ଷା କାଳରେ ସୁଖଗ୍ରାହି ବ – ସ୍ୱାମୀ ପ୍ରବାସୀ ହେଲେ ଜଗତଙ୍କ ଆନନ୍ଦ ଦାୟକ ହୁଏ ନାହିଁ ।

୧୬ । ଅଙ୍ଗାରକ ଅଗ୍ନି ଶିଖା ।

୧୭ । ଅତ୍ରପ–ଗୁଣ୍ଡିଗ୍ଧ ।

୧୮ । ଏହି ହେଜ······ଅଙ୍କୁଶ – ନିଷେଧ ରୂପକ ହସ୍ତୀର ସଙ୍କୋଚ ନିମିତ୍ତ କରରେ ଅଙ୍କୁଶ ଧରଲେ ଅର୍ଥାତ୍ ଯିବା ପାଇଁ ବ୍ୟଗ୍ର ହେଲେ ।

## ଦ୍ୱାଦଶ ଛାନ୍ଦ

ଶଧୁସର–ମଳନ । ଓହର–ଗଳିଯିବା–ଫେଡ଼ିଯିବା । ଅବଲେପ–ଗର୍ବ, ତାପ । ଶମ୍ପା–ବିଜୁଳି । ହେମ–ସୁବର୍ଣ୍ଣ, ହିମ ପାଠ ମଧ ଗ୍ରହଣୀୟ । ସୁସମନସ – ଫୁଲ । ଜ୍ୟୋତିଧର–ନକ୍ଷତ୍ର । ଦଶନ–ଦାନ୍ତ । ବଶିଖ—ଶର । ଅବତାର–ପ୍ରବେଶ । ଅର୍ଦ୍ଧଚନ୍ଦ୍ର ଦୂଷଣ – ଅଳ୍ପରେ ଅର୍ଦ୍ଧଚନ୍ଦ୍ରକୁ ଲାଜ ଦେଉଛି । ମଦକଳ—ମଦମତ୍ତ । ପୁଷ୍ପବନ୍ତ–ଚନ୍ଦ୍ର ଓ ସୂର୍ଯ୍ୟ । ରାଗ – ସ୍ୱର, କ୍ରୋଧ ।

## ତ୍ରୟୋଦଶ ଛାନ୍ଦ

ଚାନ୍ଦୁରେଖା—ଜଗନ୍ନାଥଙ୍କ ଅଳଙ୍କାର ବିଶେଷ । କାମଦେବ ବାମ–ମହାଦେବ । ବିଷ୍ଣୁପଦ—ଆକାଶ । କପୂରକାର – ସୁଧ । ବୃନ୍ଦାରକ··· ବନ୍ଦ—ଦେବତାମାନେ ବନ୍ଦନା କରୁଅଛନ୍ତି । ଅପ୍ରମିତ–ବହୁଳ । ଅନ୍ତପାଠ–ଯବନିକା । ବ୍ୟାଜେ—ଛଳରେ । ବାହୁକ – ରଥଗୃହକ । ଶତାଙ୍ଗ–ରଥ । ପିତୃବନ —ଶ୍ମଶାନ । ସୀରପାଣି – ଲାଙ୍ଗଳ ହସ୍ତରେ ଯାହାଙ୍କର, ବଳଦେବ । ସବ୍ୟସାଚ—ଦୁଇ ହାତରେ ବାଣ

ମାରିଲ୍ଲା—ବାମ ହାତରେ ମଧ୍ୟ ଶର ନିକ୍ଷେପ କଲା । ନିର୍ବାଣ ଅପୂନ-ମୋକ୍ଷ ଦାତା, ଜଗନ୍ନାଥ । ଅରୁଣ — ବାଳସୂର୍ଯ୍ୟ । ଚକ୍ରଚୟ — ଚକ୍ରବାକ ସବୁ ।

## ଚତୁର୍ଦ୍ଦଶ ଛାନ୍ଦ

ତାମ୍ରଚୂଡ଼ — କୁକୁଡ଼ା । ଦ୍ୱିଜରାଜା — ଚନ୍ଦ୍ର । ରୂପାଜୀବୀ — ବେଶ୍ୟା । ଭୁଜଙ୍ଗ — ଲମ୍ପଟ । ତରଙ୍ଗ ତରଙ୍ଗ — ତରଙ୍ଗପରି ଚଞ୍ଚଳ । ଜୁଧପତି — ଜାର । ଧୂପମଶକ — ଧୂଆଁରେ ପଳାଇଲା ମଶା ପରି । ଅଭିସାରିକା — ଯେ ସ୍ତ୍ରୀ ରାତିରେ ପ୍ରିୟ ନିକଟକୁ ଗମନ କରେ । ଖଣ୍ଡିତା — ସ୍ୱାମୀଙ୍କ କାନ୍ତର ସମାଗମ ନ ହେବାରୁ ଯେ ସ୍ତ୍ରୀ ହତାଶ ହୋଇଥାଏ । ବେହା — ବଧ । ହତସ୍ତୋମ — ଚାଲସବୁ । କଉଶିକ — ପେଚା । କୁଟେ — ଘାତକରେ । କ୍ରୋଟେ — କ୍ରୋଡ଼ରେ । ଜୃମ୍ଭାଳସ — ହାଇ ମାରି ଅଳସ୍ୟ ଭାଙ୍ଗିବା । ନିଶାଚର — ରାକ୍ଷସ ବା ଚୋର । ଗଳଗ୍ରହ — ମରଣାତ୍ମକ, ବ୍ୟାଧି ବିଶେଷ । ରମଣୀମଣି — ସ୍ତ୍ରୀମାନେ । ରମଣୀମଣି — ସ୍ତ୍ରୀଙ୍କ ଅଳଙ୍କାର । ଦୀନବନ୍ଧୁ — ଜଗନ୍ନାଥ । ଦିନବନ୍ଧୁ — ସୂର୍ଯ୍ୟ । ଶ୍ରୀକରରେ — ଶ୍ରୀହସ୍ତରେ — ସୁନ୍ଦର କିରଣରେ । ଅରବିନ୍ଦ ଚକ୍ର—ପଦ୍ମ ଓ ଚକ୍ରବାକ ବା ପଦ୍ମ ସମୂହ । ଚାରିବର୍ଣ୍ଣ—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ବ୍ୟାପାରେ — ନିଜ ନିଜ କାର୍ଯ୍ୟରେ । ବାଗାଡ଼ମ୍ବର - କଥାରେ ଆଡ଼ମ୍ବର । ତାର ତାରକା — ଉଜ୍ଜ୍ୱଳ ନକ୍ଷତ୍ର । ଅମୃତ — ଚନ୍ଦ୍ରକିରଣ । ଚନ୍ଦ୍ରକାନ୍ତ ପନ୍ତି—ଚନ୍ଦ୍ରକାନ୍ତ ମଣିସବୁ ବା ଚନ୍ଦ୍ରକିରଣ ସବୁ ଅମୃତ ଆହାରରେ ଯେପରି ସୁନ୍ଦର ଦିଶନ୍ତି । ଶିଖୀ—ମୟୂର । ମୁନି କୁସୁମ— ଅଗସ୍ତି ଫୁଲ । ଦୋଷ୍ଟ— ପୁଷ୍ପଲତା ବିଶେଷ । ମାନସରୁ ମାନସର ବାସୀ—ମାନସରୋବରରୁ ରାଜହଂସ । ରସାଳ—ଆମ୍ବ । ସମ୍ପୁଟ—ଫରୁଆ ।

—ସମ୍ପୂର୍ଣ୍ଣ—

**ପ୍ରାଚୀ ସମିତି ପ୍ରକାଶିତ**

ଭଲ ବହିରୁ କେତେ ଖଣ୍ଡ

# ଚଉତିଶା ମଧୁଚକ୍ର

**ମଧୁର ଚଉତିଶାମାନଙ୍କର ସମାବେଶ**

| | |
|---|---|
| ପ୍ରଥମ ଖଣ୍ଡ | ଠ ୦ ୫ |
| ଦ୍ୱିତୀୟ ଖଣ୍ଡ | ଠ ୦ ୫ |
| ତୃତୀୟ ଖଣ୍ଡ | ଠ ୦ ୫ |
| ଚତୁର୍ଥ ଖଣ୍ଡ | ଠ ୦ ୫ |

# ରାମବିଭା

ସୁମଧୁର ଲଳିତ ଭାଷାରେ ଭଗବାନ ରାମଚନ୍ଦ୍ରଙ୍କର
ବୀରତ୍ୱପୂର୍ଣ୍ଣ ବାଲ୍ୟ ଜୀବନ ଓ ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।

ନୀଳ ଜଳଧର କାନ୍ତି, ରୁଚିର ଶରୀର ଭାନ୍ତି ।
ନୟନ କମଳ ଫୁଲ, ରୂପେ ଅମୂଲ୍ୟ ଯେ । ୬ ଷ ୫୧ ।
ପିନ୍ଧଣି ପୀତ ଦୁକୂଳ, ମଉଳି ମାଧବୀ ଚୂଳ ।
କଟିକଟେ ପରବେଶ ମଦନ ବେଶ ଯେ । ୬ ଷ ୫୨ ।

ମୂଲ୍ୟ ଆଠଅଣା ମାତ୍ର ।

# ରହସ୍ୟ ମଞ୍ଜରୀ

ସରସ ସୁନ୍ଦର କାବ୍ୟ ପଢ଼ିଲେ ମନରୁ ଯାଏ ନାହିଁ, ଉଚ୍ଚାରିଲେ ଗୋଟିକଯାକ ଉଚ୍ଚାରିବାକୁ ଇଚ୍ଛା ହୁଏ । ମାତ୍ର ନବମ ଛାନ୍ଦରୁ ଦୁଇଟି ପଦ ଦିଆହେଲା ।

ସଜଳ ଜଳଦ କାନ୍ତି, ନୀଳମଣି ଜିଣି ଭାନ୍ତି
ଅମଳ କମଳ, ମୁଖ ମଣ୍ଡଳ ଅଳକ ଅଳକାପନ୍ତି ।
କୁଣ୍ଡଳ କୁନ୍ତଳ ଚୂଳେ, ଗ୍ରଥିତ ବିବିଧ ଫୁଲେ
ବାନ୍ଧେ ଝଲମଲ ମୟୂର ପୁଚ୍ଛ ମତ୍ତ ମଧୁକର ଭୁଲେ ।

ମୂଲ୍ୟ ବାରଅଣା ମାତ୍ର ।

# ଆଉ କେତେ ଖଣ୍ଡ ଭଲ ପୁରାତନ ପୁସ୍ତକ
## ସୁନ୍ଦର ଛାପା

| | |
|---|---|
| ବିଦଗ୍ଧ ଚିନ୍ତାମଣି ସଟୀକ ପ୍ରଥମ ଭାଗ | ଟ ୧୮ |
| ରସକଲ୍ଲୋଳ | ଟ ୧୫ |
| ମଥୁରାମଙ୍ଗଳ | ଟ ୧୫ |
| ପୂର୍ଣ୍ଣତମ ଚନ୍ଦ୍ରୋଦୟ | ଟ ୦୫ |
| ଗୋପୀଭାଷା (ବୃହତ୍) | ଟ ୧୮ |
| ପ୍ରେମପଞ୍ଚାମୃତ | ଟ ୦୷ |
| ରସବାରିଧି | ଟ ୦୫ |
| ନଳ ଚରିତ | ଟ ୦।୵ |
| ଶଶିସେଣା | ଟ ୦୫ |
| ଉଷାଭିଳାଷ | ଟ ୦୫ |
| ରୁକ୍ମିଣୀ ବିଭା | ଟ ୦୫ |
| ଶିବସ୍ୱରୋଦୟ (ପରମ ଦୁର୍ଲ୍ଲଭ ଗ୍ରନ୍ଥ ପଢ଼ିଲେ ଶତାଧିକ ବର୍ଷ ବଞ୍ଚିବାର ଉପାୟ ପାଇବେ ) | ଟ ୦। |

ମହିମା ଧର୍ମାବଲମ୍ବୀମାନଙ୍କର ଶ୍ରେଷ୍ଠ ସମ୍ପଦ

| | |
|---|---|
| ମହିମାଧର୍ମ୍ମ ପ୍ରତିପାଦକ | ଟ ୨୮ |
| ଜୟକୃଷ୍ଣ ଭଜନ | ଟ ୦୫ |

ଏକମାତ୍ର ପ୍ରାପ୍ତିସ୍ଥାନ :—

ପ୍ରାଚୀ ବୁକ୍ ଷ୍ଟଲ

ପୋଃ ଅଃ ଚାନ୍ଦନୀଚୌକ,

କଟକ

